# କବି ଗଙ୍ଗାଧର ମେହେର

ଶ୍ରୀ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା



ଓଡ଼ିଶା ସାହିତ୍ୟ ଏକାଡେମୀ

# କବି ଗଙ୍ଗାଧର ମେହେର

ଲେଖକ :

ଶ୍ରୀ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା

ପ୍ରକାଶକ :

ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର-୭୫୧୦୧୪

ପ୍ରଥମ ପ୍ରକାଶ : ୧୯୮୮

ମୁଦ୍ରାକର :

ସପ୍ତର୍ଷି ପ୍ରିଣ୍ଟର୍ସ
ମଧୁପାଟଣା, କଟକ-୧୦

ମୂଲ୍ୟ : ଟ. ୨୩.୭୫

# KAVI GANGADHAR MEHER

*Written by*

**Shree Gobind Chandra Udgata**

*Published by*

**Orissa Sahitya Akademi**
Bhubaneswar-751014

First Edition : 1988

*Printed at*

**Saptarshi Printers,**
Madhupatna, Cuttack-10

**Price** : Rs. 23.75

# ଅଗ୍ରଲେଖ

କବି ଗଙ୍ଗାଧର ମେହେର ( ୧୮୬୨-୧୯୨୪ ) ଓଡ଼ିଆ ସାହିତ୍ୟ ଇତିହାସରେ ଏକ ସମୁଜ୍ଜ୍ୱଳ ପ୍ରତିଭା । ପ୍ରାଚ୍ୟ-ପରଂପରା ଓ ଆଦର୍ଶରେ ଅନୁରାଗୀ କବି ଗଙ୍ଗାଧର ଚିରନ୍ତନୀ ଭାରତୀୟ ସଂସ୍କୃତି ଓ ସାହିତ୍ୟକୁ ଆଧାରିତ କରି ଯେଉଁ ଅଜସ୍ର କାବ୍ୟ-ବିଭବ ସୃଷ୍ଟି କରି ଯାଇଅଛନ୍ତି, ତାହା ତାଙ୍କୁ ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ଓ ଉଲ୍ଲେଖଯୋଗ୍ୟ ସ୍ଥାନର ଅଧିକାରୀ କରିଅଛି । ସେ ଥିଲେ ସତ୍ୟ, ଶିବ ଓ ସୁନ୍ଦରର ଏକନିଷ୍ଠ ଉପାସକ ଏବଂ ତାଙ୍କ କାବ୍ୟ-ସୃଷ୍ଟିରେ ସେହି ନୈସର୍ଗିକ ଶାଶ୍ୱତ ସତ୍ତାର ଉପଲବ୍‌ଧି ଓ ପ୍ରତିଫଳନ ଛନ୍ଦେ ଛନ୍ଦେ ପ୍ରକଟିତ । ମାତୃଭୂମି ଓ ମାତୃଭାଷାର ଗୌରବାବହ ସ୍ମୃତି ସ୍ମରଣ ମଧ୍ୟରେ ମେହେର-ଜାତୀୟତାର ସ୍ଫୁରଣ ଘଟିଛି ;

"ଉଚ୍ଚ ହେବା ପାଇଁ କରି ଯେବେ ଆଶା
ଉଚ୍ଚ କର ଆଗ ନିଜ ମାତୃଭାଷା ।"

ମାତୃଭାଷାର ଉନ୍ନତିକଳ୍ପେ ଏହି ସରସ୍ୱତୀ-ବରପୁତ୍ର ଅବିଶ୍ରାନ୍ତ ଭାବରେ ଲେଖନୀ-ଚାଳନା କରି ତପସ୍ୱିନୀ, ଇନ୍ଦୁମତୀ, କୀଚକବଧ ଓ ପ୍ରଣୟବଲ୍ଲରୀ ପ୍ରଭୃତି ଅନବଦ୍ୟ ମନୋରମ କାବ୍ୟ ଏବଂ ଉଚ୍ଚକୋଟୀର ଗୀତି-କବିତା ରଚନା କରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଯାଇ ଅଛନ୍ତି ।

"କବି ଗଙ୍ଗାଧର ମେହେର" ଶୀର୍ଷକ ଗଙ୍ଗାଧର ଜୀବନୀ ଓ ପ୍ରତିଭା ସମ୍ବଳିତ ମନୋଗ୍ରାଫ୍‌ଟିର ଲେଖକ ଶ୍ରୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା, ଓଡ଼ିଆ ସାହିତ୍ୟରେ ଜଣେ ନିଷ୍ଠାପର ଗବେଷକ ଓ ସମାଲୋଚକ । ପାଞ୍ଚଗୋଟି ପରିଚ୍ଛେଦରେ ବିଭକ୍ତ ଏହି ପୁସ୍ତକରେ କବିଙ୍କ ଜୀବନୀ ଓ ସାହିତ୍ୟ-ସାଧନା ସମ୍ପର୍କରେ ବିଶଦାଲୋଚନା କରି ସେ ଏହାକୁ ସମୀକ୍ଷାଧର୍ମୀ-ସାହିତ୍ୟରେ ପରିଣତ କରି ପାରିଛନ୍ତି । ତାଙ୍କର ଏହି ସାଧୁ ଉଦ୍ୟମ ପାଇଁ ଏ ଅବକାଶରେ ମୁଁ ତାଙ୍କୁ ଧନ୍ୟବାଦ ଅର୍ପଣ କରୁଛି ।

ଏହି ମନୋଗ୍ରାଫ୍‌ଟିର ପ୍ରଣୟନ ଓ ପ୍ରକାଶନ ଯୋଗୁଁ ଓଡ଼ିଆ ଭାଷା-ସାହିତ୍ୟର ସମୃଦ୍ଧି ସାଧିତ ହେବା ସଙ୍ଗେ ସଙ୍ଗେ ଏହା ସୁଧୀ ପାଠକମାନଙ୍କ ଦ୍ୱାରା ଆଦୃତ ହେବ ବୋଲି ମୁଁ ଆଶା ପୋଷଣ କରୁଛି ।

ସୁରେନ୍ଦ୍ରନାଥ ଶତପଥୀ

ଦୋଳପୂର୍ଣ୍ଣିମା — ସଂପାଦକ

ତା ୩-୩-୮୮ — ଓଡ଼ିଶା ସାହିତ୍ୟ ଏକାଡେମୀ

# ବିଷୟ-ସୂଚୀ

# ପ୍ରଥମ ପରିଚ୍ଛେଦ

# ଗଙ୍ଗାଧର ଜୀବନ କଥା

୧୮୬୨, ଅଗଷ୍ଟ ୯ ତାରିଖ ଶ୍ରାବଣ ଶୁକ୍ଳପକ୍ଷ ପୂର୍ଣ୍ଣିମା ତିଥିରେ ବରପାଲିରେ ଭୂମିଷ୍ଠ ହୋଇଥିଲେ ଗଙ୍ଗାଧର ମେହେର । ବରପାଲି ଏକ ଗ୍ରାମ୍ୟ ସହର । ଇତସ୍ତତଃ ଭାବେ କେତୋଟି ପଲ୍ଲୀବସ୍ତିକୁ ନେଇ ଗଠିତ ଏହି ଅନତିକ୍ଷୁଦ୍ର ଜନପଦଟି ଆଜିକାଲି ଏକ ବିଜ୍ଞାପିତ ଅଞ୍ଚଳ ହୋଇଛି । ସମ୍ବଲପୁର ଠାରୁ ଦକ୍ଷିଣକୁ ପ୍ରାୟ ୮୦ କିଲୋମିଟର ଦୂରରେ ସମ୍ବଲପୁର-ବଲାଙ୍ଗିର ମୁଖ୍ୟରାସ୍ତା ଉପରେ ଏହା ଅବସ୍ଥିତ । ଏହି ବରପାଲି ଓଡ଼ିଶାର ଏକ ସର୍ବମାନ୍ୟ ସାହିତ୍ୟ ତୀର୍ଥରେ ପରିଣତ ହେବାର ପବିତ୍ର ଲଗ୍ନ ସେଦିନ ଆସିଥିଲା । ଧାର୍ମ-ଶ୍ରାବଣର ସଙ୍ଗୀତ ତାଳେ ତାଳେ ଝୁଲଣ ଦୋଳାରେ ସମାସୀନ ଦେବତାଙ୍କ ଆନନ୍ଦର ପ୍ରଭାବରେ ରକ୍ଷାବନ୍ଧନର ସ୍ନେହ-ରଜ୍ଜୁ ସମଗ୍ର ଜନସମାଜରେ ଆଣିଦିଏ ଯେଉଁ ଚେତନା, ତାହାର ମନୋରମ କାବ୍ୟିକ ବାଣୀ ହେଉଛି ଗଙ୍ଗାଧରଙ୍କ "ଭଗ୍ନଦେଖି ମଧୂମୟ" । ମଧୂମୟ ବିଶ୍ୱର ମଧୂର ସଙ୍ଗୀତକୁ ଅମୃତ ଲେଖନୀରେ ରୂପ ଦେବା ଲାଗି ଏକ ଯୁଗଜନ୍ମା ପ୍ରତିଭାର ଆବିର୍ଭାବ ପାଇଁ ସତେ ଯେପରି ତାହା ହିଁ ଥିଲା ଏକ ଅନବଦ୍ୟ ମୁହୂର୍ତ୍ତ । ପିତା ଚୈତନ୍ୟ ମେହେର ଓ ଜନନୀ ସେବତୀଙ୍କ ସଂସାରକୁ ଆଲୋକିତ କଲା ଏହି ଶିଶୁ ଏକମାତ୍ର କୁଳନନ୍ଦନ ରୂପେ । ତାଙ୍କର ଜ୍ୟେଷ୍ଠା କନିଷ୍ଠା ଦୁଇ ସହୋଦରା ଭଗିନୀ ଥିଲେ, ବଜୁଲୀ ଓ ତାଳମ୍ବା ।

**ବଂଶ ପରିଚୟ :**

ଗଙ୍ଗାଧର ଜାତିରେ ଥିଲେ ଭୁଲିଆ । ଏମାନଙ୍କର ମୌଳିକ ବୃତ୍ତି ହେଉଛି ବସ୍ତ୍ରବୟନ । ଆଜିକି ୧୨୫ ବର୍ଷ ତଳେ ପୋଷାକ ପରିଚ୍ଛଦ କ୍ଷେତ୍ରରେ ସମଗ୍ର ସମାଜର ଆବଶ୍ୟକତା ପୂରଣ କରିବା ଥିଲା ସେହି ବୁଣାକାରମାନଙ୍କ ବ୍ୟବସାୟ । ଭୁଲିଆମାନଙ୍କ ବ୍ୟତୀତ ଏହି କର୍ମ-ନିରତ ଜାତିଆଣ ଗୋଷ୍ଠୀ

ହୋଇଛନ୍ତି କୋଷ୍ଟା, କୁଲ ଓ ଗଣ୍ଡା (ହରିଜନ) । କୋଷ୍ଟାମାନେ ମୁଖ୍ୟତଃ ମଠା ଲୁଗା ବୁଣନ୍ତି । ଭୁଲିଆ, କୋଷ୍ଟା ଓ କୁଲ ସମସ୍ତେ ମେହେର ସାଂଗିଆ (Surname) ଧାରଣ କରନ୍ତି । ଏମାନେ ସମସ୍ତେ ତନ୍ତୁବାୟ ହେଲେହେଁ ଜାତିଆଣ ବିଷୟର ଦୃଷ୍ଟିରୁ ଭୁଲିଆ ଓ କୋଷ୍ଟାମାନେ ଉଚ୍ଚତର ଜାତିର ମାନ୍ୟତା ଲାଭ କରିଥିଲେ । ପରବର୍ତ୍ତୀ କାଳରେ କୁଲ ମେହେର ଓ ଗଣ୍ଡା ବୁଣାକାର-ମାନଙ୍କୁ ତଫସିଲଭୁକ୍ତ ଜାତିର ଅନ୍ତର୍ଭୁକ୍ତ କରାଯାଇଛି । ତେଣୁ ସେକାଳ ସମାଜରେ ମଧ୍ୟ ଭୁଲିଆ ପରିବାରର ଆଦି ପ୍ରତିଷ୍ଠାତା ହେଉଛନ୍ତି ତାଙ୍କ ପ୍ରପିତାମହ କେଶବ ମେହେର । ସେ ଧନୀବ୍ୟକ୍ତି ନଥିଲେ ମଧ୍ୟ ତାଙ୍କର ପାଞ୍ଚୋଟି ପୁତ୍ରଙ୍କୁ ନେତୃତ୍ୱ ଦେଇ କୌଳିକ ବସ୍ତ୍ରବୟନ ସହିତ ଧାନ ଓ ଟଙ୍କାର ଋଣ କାରବାର ମାଧ୍ୟମରେ ମଧ୍ୟବିତ୍ତ ପରିବାରର ସମୃଦ୍ଧି ସାଧନ କରି ପାରିଥିଲେ । ଅଧମର୍ଣ୍ଣ କୃଷକମାନେ ଯେଉଁ ଗୋମହିଷାଦି ପଶୁ ବିନିମୟରେ ଋଣମୁକ୍ତ ହେଉଥିଲେ ତହିଁରେ ତାଙ୍କର ଗୋସମ୍ପଦ ବୃଦ୍ଧି ଲାଭ କରିଥିଲା । ସେକାଳର ଗ୍ରାମୀଣ ସମାଜରେ ଏହି ପରିବାରର ଏ ବୈଷୟିକ ସମୃଦ୍ଧି ତାଙ୍କ ବୁଦ୍ଧିମତ୍ତା ଓ ନିରଳସ ଉଦ୍ୟମର ଫଳ ବୋଲି ସ୍ୱୀକାର କରିବାକୁ ହେବ । କେଶବଙ୍କ କନିଷ୍ଠପୁତ୍ର ସଦାଶିବଙ୍କର ଅପର ବୈଶିଷ୍ଟ୍ୟ ଥିଲା; ସେ ଥିଲେ ବୈଦ୍ୟ ଏବଂ ଜ୍ୟୋତିଷ । ତାଙ୍କରି ଜ୍ୟେଷ୍ଠପୁତ୍ର ଗଙ୍ଗାଧରଙ୍କ ପିତା ଚୈତନ୍ୟ ମେହେର । ଗଙ୍ଗାଧର ଗ୍ରନ୍ଥାବଳୀରେ ସନ୍ନିବେଶିତ କବିଙ୍କ ସଂକ୍ଷିପ୍ତ ଆତ୍ମଚରିତରେ (ଗ୍ରନ୍ଥାବଳୀ ଦ୍ୱିତୀୟ ସଂସ୍କରଣ, ୧୯୫୭, ପୃ. ୪୦୯) ସେ ଆପଣା ବଂଶ ପରିଚୟ ପ୍ରସଙ୍ଗରେ ଏ ସବୁର ଉଲ୍ଲେଖ କରିଛନ୍ତି । ନିଜ ପିତାଙ୍କ ବିଷୟରେ ସଂକ୍ଷେପରେ ସେ ଲେଖିଛନ୍ତି, "ମୋର ପିତା ପୈତୃକ ବିଦ୍ୟା ଓ ବ୍ୟବସାୟରେ ଅଭ୍ୟସ୍ତ ହେଲେ ।" ଏହା ବ୍ୟତୀତ ଚୈତନ୍ୟ ମେହେର ଏକ ଚାଟଶାଳୀ କରିଥିବାର ମଧ୍ୟ ସେ ଉଲ୍ଲେଖ କରିଛନ୍ତି । ତେଣୁ ଗ୍ରାମର ଶିକ୍ଷକ, ବୈଦ୍ୟ ଏବଂ ଜ୍ୟୋତିଷ ଭାବରେ ସାଂସ୍କୃତିକ କାର୍ଯ୍ୟକ୍ରମ ନିରତ ହେବା ସଙ୍ଗେ ସଙ୍ଗେ ଅର୍ଥୋପାର୍ଜନ କରିବାର ଏହି ପନ୍ଥାରେ ଚୈତନ୍ୟ ଅବଶ୍ୟ ଅଧିକ ସମ୍ଭ୍ରାନ୍ତ ବୋଲାଉଥିବେ । ଏହା ଫଳରେ କୌଳିକ ବସ୍ତ୍ରବୟନ ବ୍ୟବସାୟ ପ୍ରତି ତାଙ୍କର ସମୟାଭାବ ଘଟିଥିବା ମଧ୍ୟ ସମ୍ଭବ । ଏ ପ୍ରସଙ୍ଗରେ ଗଙ୍ଗାଧରଙ୍କ ଆତ୍ମ-ଜୀବନୀର ଗୋଟିଏ ବାକ୍ୟ ପ୍ରଣିଧାନ ଯୋଗ୍ୟ—"ମୋର ପିତା ସର୍ବଦା ବସ୍ତ୍ରବୟନାଦି କାର୍ଯ୍ୟରେ ଅବହେଳା କରୁଥିଲେ ବୋଲି ତାଙ୍କର ପିତାମାତା ଓ ଭ୍ରାତାଙ୍କ ଦ୍ୱାରା ନିନ୍ଦିତ ହେଉଥିଲେ ।" କହିବା ବାହୁଲ୍ୟ ଯୌଥପରିବାରରେ ଏହା ଅବଶ୍ୟ ମନୋମାଳିନ୍ୟର କାରଣ ହୋଇଥିବ । ଏହି ମନୋମାଳିନ୍ୟ ଉତ୍କଟ ହେଲା ୧୮୭୨ରେ ଯେତେବେଳେ ଗଙ୍ଗାଧରଙ୍କ ବିବାହ-କାଳୀନ ବ୍ୟୟନିର୍ବାହ ନିମନ୍ତେ ଟ୭୦-ଋଣ କରି ପରିବାର ଋଣଗ୍ରସ୍ତ ହେଲା ।

ଶେଷରେ ଚୈତନ୍ୟ ମେହେରଙ୍କୁ ତାଙ୍କ ପିତା ଓ କନିଷ୍ଠ ଭ୍ରାତା ଭିନ୍ନେ କରିଦେଲେ । ସମ୍ପତ୍ତିରୁ ନିଜର ପ୍ରାପ୍ୟ ଲଭ ନିମିତ୍ତ ଚୈତନ୍ୟଙ୍କୁ ଗ୍ରାମର ପଞ୍ଚଭଦ୍ର ଲୋକଙ୍କ ଶରଣ ନେବାକୁ ପଡ଼ିଥିଲା । ଏହିପରି ଭାବେ ବଦାଶିବଙ୍କ ସମ୍ପତ୍ତିର ତୃତୀୟାଂଶ ଅବଲମ୍ବନରେ ଚୈତନ୍ୟ ମେହେର ନିଜର ସ୍ୱତନ୍ତ୍ର ପାରିବାରିକ ଜୀବନ ଆରମ୍ଭ କଲେ ।

## ବରପାଲୀର ସମକାଳୀନ ଆର୍ଥିକ ଓ ସାମାଜିକ ପରିସ୍ଥିତି :

ବରପାଲି ବର୍ତ୍ତମାନ ଯେଉଁ ଆକାର ଧାରଣ କରିଛି, ୧୨୫ ବର୍ଷ ପୂର୍ବେ ତାହା ସେପରି ନଥିଲା । ତଥାପି ତାହାର ସମୃଦ୍ଧି ଉଲ୍ଲେଖଣୀୟ ଥିଲା ବୋଲି ମନେହୁଏନା । ଏ ସମ୍ପର୍କରେ ଗଙ୍ଗାଧର ମେହେରଙ୍କ ପୁତ୍ର ଭଗବାନ ମେହେର ତାଙ୍କ ପିତୃ ପ୍ରସଙ୍ଗ (୧୯୭୭) ଗ୍ରନ୍ଥରେ ନିମ୍ନମତେ ଉଲ୍ଲେଖ କରିଛନ୍ତି :

"ସାଧାରଣ କଥାରେ ସେତେବେଳେ ଏହା ଗୋଟିଏ ପଲ୍ଲୀଗ୍ରାମ ହୋଇଥିଲେ ସୁଦ୍ଧା ଚହଟିରେ ଲୋକଙ୍କ ଜୀବନ-ଯାତ୍ରା ଅନ୍ୟ ପଲ୍ଲୀ ଗ୍ରାମଗୁଡ଼ିକ ଅପେକ୍ଷା ସ୍ୱତନ୍ତ୍ରଣୀୟ ଥିଲା । ଏଠାରେ ସେ ସମୟରେ ସହରର ଶିକ୍ଷା ସଭ୍ୟତା ଓ ସୁବିଧା ସୁଯୋଗ ନଥିଲେ ମଧ୍ୟ ଗ୍ରାମ୍ୟ ସଂସ୍କାର ଢଗରେ ଏହା ଆଧୁନିକତା-ଉନ୍ମୁଖୀ ଥିଲା । ହାଟ, ବଜାର, ଦୋକାନ ଅଛି ଗ୍ରେଟ ଧରଣର; କିନ୍ତୁ ମଧ୍ୟ-ଓଡ଼ିଆ ସ୍କୁଲ, ପୋଲିସ୍ ଥାନା, ପୋଷ୍ଟ ଅଫିସ, ସେନିଟେସନ୍ ଆଦି ପ୍ରତିଷ୍ଠାନ ଯୋଗୁଁ ଏହାର ଅବସ୍ଥିତି ସ୍ୱାନକଳ୍ପ ନଥିଲା । ମାନବ ଜୀବନ-ଯାତ୍ରା ପଥରେ ପ୍ରୟୋଜନୀୟ ସକଳ ଜାତିର ସେଠାରେ ନିବାସ ଥିଲା । ବ୍ରାହ୍ମଣ, କରଣ, ସୁନାରି, କଂସାରି, ଭୁଲିଆ, ଗୁଡ଼ିଆ, କୋଷ୍ଟା, କୁମ୍ଭାର, ଚମାର (ମୋଚି), ତେଲି, ମାଳୀ, ଗଉଡ଼, କେଉଟ, ଧୋବା, ଭଣ୍ଡାରି, ଗଣ୍ଡା, ଘାସୀ ପ୍ରଭୃତି ବିଭିନ୍ନ ବୃତ୍ତି-ଜୀବୀମାନେ ସ୍ୱଚ୍ଛନ୍ଦରେ ଜୀବିକା ନିର୍ବାହ କରୁଥିଲେ ।

"ସମ୍ବଲପୁରକୁ ରେଲଲାଇନ ଆସିବା ପୂର୍ବରୁ ବରପାଲି ଏ ଅଞ୍ଚଳର ଏକ ବାଣିଜ୍ୟ କେନ୍ଦ୍ର ରୂପେ ବିଦିତ ଥିଲା । ସେଠାରୁ ପୂର୍ବତନ ଗଡ଼ଜାତ ରାଜ୍ୟ ସୋନପୁର ଅନ୍ତର୍ଗତ 'ବିନିକା' ଗ୍ରାମ ଦେଇ ମହାନଦୀ ମାର୍ଗରେ ବ୍ୟବସାୟୀମାନେ ନୌକାଯୋଗେ କଟକ ଯାଇ ନାନା ପ୍ରକାର ପଣ୍ୟଦ୍ରବ୍ୟ ଆଣି ବିକ୍ରୟ କରୁଥିଲେ । ଏ ଅଞ୍ଚଳରୁ ମଧ୍ୟ ପ୍ରଭୂତ ପରିମାଣର କୃଷିଜାତ ଦ୍ରବ୍ୟ ଓ ଅନ୍ୟାନ୍ୟ ପଦାର୍ଥ ବଳଦ ଗାଡ଼ିରେ ବିନିକା ପର୍ଯ୍ୟନ୍ତ ବୁହା ହୋଇ ସେଠାରୁ ପୂର୍ବୋକ୍ତ ମତେ କଟକ ପ୍ରେରିତ

ହେଉଥିଲା । ଏଣୁ ମୁଖ୍ୟତଃ ବରପାଲି ଗ୍ରାମ ବ୍ୟବସାୟୀମାନଙ୍କ ସୋନପୁର ରାଜ୍ୟ ପ୍ରବେଶ-ପଥର ଦ୍ୱାର ସ୍ୱରୂପ ଥିଲା । ସୁଦୂର ପଶ୍ଚିମାଞ୍ଚଳବାସୀ ଧର୍ମପ୍ରାଣ ପୁଣ୍ୟଯାତ୍ରୀମାନଙ୍କର ଗତାଗତ ପଥ ମଧ୍ୟରେ ତାହା ଏକ ପ୍ରଧାନ ଅଶ୍ରୟସ୍ଥଳ ଥିବାରୁ ସେମାନଙ୍କ ଆନନ୍ଦ କୋଳାହଳରେ ବରପାଲି ଗ୍ରାମ ପ୍ରାୟ ସର୍ବଦା ମୁଖରିତ ହୋଇଥିଲା ।

"ସମ୍ବଲପୁର ଅଞ୍ଚଳ ବସ୍ତ୍ରଶିଳ୍ପ (ସୂତା ବସ୍ତ୍ର ଓ ମଠାବସ୍ତ୍ର) ସକାଶେ ଚିର ପ୍ରସିଦ୍ଧ । ମଠାବସ୍ତ୍ର ବୟନ କୋଷ୍ଟା ଜାତିର ପ୍ରଧାନ ଅବଲମ୍ବନ ଓ ସୂତା ବସ୍ତ୍ର ବୟନରେ ଭୁଲିଆମାନଙ୍କ ପ୍ରସିଦ୍ଧି ଥିଲା । ଭୁଲିଆମାନେ ସେକାଳରେ ବୃକ୍ଷ-ବଲ୍କଳ, ଲତାଗୁଳ୍ମ ଆଦି ସଂଗ୍ରହ କରି କେତେକ ସାଧାରଣ ପଦାର୍ଥର ସମ୍ମିଶ୍ରଣରେ ଗାଢ଼ ରକ୍ତବର୍ଣ୍ଣ ଓ ନୀଳବର୍ଣ୍ଣର ସ୍ଥାୟୀରଙ୍ଗ ଉତ୍ପାଦନ କରି ପାରୁଥିଲେ । ଏହାଛଡ଼ା ହସ୍ତ-କୌଶଳ ବଳରେ ପୁଞ୍ଜୀକୃତ ସୂତ୍ର ଗୁଡ଼ିକୁ ବାନ୍ଧି ପର୍ଯ୍ୟାୟକ୍ରମେ ଭିନ୍ନ ରଙ୍ଗ ଦେଇ ସୁନ୍ଦର ସୁନ୍ଦର ଜୀବଜନ୍ତୁ, ଲତାପୁଷ୍ପ ଆଦି ବସ୍ତ୍ରଗାତ୍ରରେ ଫୁଟାଇ ପାରିବା ହେଉଛି ଭୁଲିଆମାନଙ୍କ ଏକ ବିଶିଷ୍ଟ କଳା । ବର୍ତ୍ତମାନ ଯୁଗରେ ଅବଶ୍ୟ ଉକ୍ତ ହସ୍ତ-ପ୍ରସ୍ତୁତ ରଙ୍ଗ ପରିବର୍ତ୍ତେ ବିଦେଶୀ ରାସାୟନିକ ରଙ୍ଗ ବ୍ୟବହୃତ ହେଉଅଛି ।"

ଭଗବାନବାବୁଙ୍କ ଏ ବର୍ଣ୍ଣନାରେ ବରପାଲିର ଯେଉଁ ଚିତ୍ର ଫୁଟି ଉଠେ ତାହା ଏକ କୋଳାହଳ ମୁଖରିତ କର୍ମ-ଚଞ୍ଚଳ ପଲ୍ଲୀ ଅଞ୍ଚଳ । ଓଡ଼ିଶାର ଉପକୂଳ ଅଞ୍ଚଳ ସହିତ ବ୍ୟବସାୟ ବାଣିଜ୍ୟ ପ୍ରସଙ୍ଗରେ ବରପାଲିର ନିଜସ୍ୱ ପଣ୍ୟଦ୍ରବ୍ୟ ଥିଲା ମଠା ଓ ସୂତା ଲୁଗା । ବିଶେଷତଃ ଭୁଲିଆମାନେ ବାନ୍ଧକୁଣା ପଦ୍ଧତିରେ ହଂସ, ମୟୂର, ହସ୍ତୀ, ପଦ୍ମ, ଶଙ୍ଖ ପ୍ରଭୃତି ନାନାଚିତ୍ର ସମ୍ବଳିତ କରି ଯେଉଁ ଚକଚକ ନାଲି ଓ ନେଳି ରଙ୍ଗର ଲୁଗା ବୁଣୁଥିଲେ ତାହା ନିଶ୍ଚୟ ଏହି ବ୍ୟବସାୟର ମୁଖ୍ୟ ସାମଗ୍ରୀ ଥିବ । ଆଜି ମଧ୍ୟ ଏହି ସମ୍ବଲପୁରୀ ଡ଼ିଜାଇନ୍ ଗୁଡ଼ିକ ଯେପରି ଦେଶ ବିଦେଶ ସର୍ବତ୍ର ଆଦୃତ ହେଉଛି ତହିଁରୁ ଅନୁମାନ କରିବା କଠିନ ନୁହେଁ ଯେ ଏକ ଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ପୂର୍ବେ ସେ ଗୁଡ଼ିକ କୁଟୀରବାସୀ ତଥା ପ୍ରାସାଦବାସୀ ସମସ୍ତଙ୍କ ପାଇଁ ଏକ ଆକର୍ଷଣୀୟ ବସ୍ତୁ ଥିବ । ଫଳତଃ ଭୁଲିଆମାନେ ଏହି ବ୍ୟବସାୟ ସୂତ୍ରରେ ଅନ୍ୟ ଜାତିର ଲୋକଙ୍କ ତୁଳନାରେ ଅବଶ୍ୟ ସମୃଦ୍ଧତର ଜୀବନ ଯାପନ କରୁଥିବେ ।

**ପରିବାରର ଆର୍ଥିକ ଅବସ୍ଥା :**

ପ୍ରସଙ୍ଗ କ୍ରମେ, ଗଙ୍ଗାଧରଙ୍କ ଦାରିଦ୍ର୍ୟ ନେଇ ଯେତେ ଆଲୋଚନା ହୋଇଛି

ସେଥିରୁ ସାଧାରଣ ଧାରଣା ହେବ ଯେ ତାଙ୍କ ପିତୃପିତାମହ ତଥା ତାଙ୍କ ପରିବାର ଅତି ଦରିଦ୍ରାବସ୍ଥାରେ ଜୀବିକା ନିର୍ବାହ କରୁଥିବେ । ପୂର୍ବୋକ୍ତ ଆଲୋଚନା ଏଭଳି ଏକ ଧାରଣାର ସମର୍ଥକ ନୁହେଁ । ସେତେବେଳେ ଗ୍ରାମ୍ୟ ଲୋକେ ଗ୍ରାମରେ ରହିବା ଥିଲା ସ୍ୱାଭାବିକ ସ୍ଥିତି । କୃଷକମାନଙ୍କ ବ୍ୟତୀତ ଜମିହୀନ ଗ୍ରାମବାସୀଙ୍କ ମଧ୍ୟରେ ଗ୍ରାମୀଣ ଶିଳ୍ପୀ ଓ କାରିଗରମାନେ ନିଜ ଜାତିଆଣ ବ୍ୟବସାୟ କରି ଚଳୁଥିଲେ । ବରପାଲିରେ ଏମାନେ ଅଳ୍ପାଧିକ ସମସ୍ତେ ଭଲ ଚଳୁଥିଲେ ବୋଲି ପ୍ରୋକ୍ତ ଉଲ୍ଲେଖରୁ ପ୍ରକାଶ । ଭୂଲିଆମାନେ ଏମାନଙ୍କ ମଧ୍ୟରେ ସମୃଦ୍ଧିଶାଳୀ ଥିବା ସ୍ୱତଃ ପ୍ରତିପନ୍ନ ହୁଏ; କାରଣ କେବଳ ଏମାନେ ହିଁ ସମାଜକୁ ଯୋଗାଉଥିବେ ପରିଧେୟ । ଅଧିକନ୍ତୁ ଭୂଲିଆମାନଙ୍କ ଠାରୁ ମିଳୁଥିଲା ଉନ୍ନତ ବସ୍ତ୍ରଶିଳ୍ପ । ଲକ୍ଷ୍ୟ କରିବାର କଥା ଯେ ଚୈତନ୍ୟ ପୈତୃକ ସମ୍ପତ୍ତିରୁ ଯେଉଁ ଭାଗ ପାଇଥିଲେ ସେଥିରେ ଭୂସମ୍ପତ୍ତିର ଆଦୌ ଉଲ୍ଲେଖ ନାହିଁ ଏବଂ ବହୁ ବର୍ଷପରେ ଉପାର୍ଜନକ୍ଷମ ଗଙ୍ଗାଧର ୧୮୯୮ରେ ନିଜ ଟଙ୍କାରେ ବରପାଲି ଜମିଦାରଙ୍କ ପାଖରୁ ଆଠ ଏକର ଜମି କିଣିବା ପର୍ଯ୍ୟନ୍ତ ଏପରିବାରର ଜମିବାଡ଼ି ନଥିଲା । ତେଣୁ କୌଳିକ ବସ୍ତ୍ର ବୟନ ବ୍ୟବସାୟରୁ ହିଁ ଏମାନଙ୍କ ଉନ୍ନତି ଘଟିଥିଲା ବୋଲି ଅବଧାରଣ କରିବା କଠିନ ନୁହେଁ । ଉପଲବ୍ଧ ଅର୍ଥରୁ ଯାହା ଉଦ୍‌ବୃତ୍ତ ରହୁ ଥିଲା ତାହା ମହାଜନୀ କାରବାରରେ ଖଟାଇବା ଥିଲା ଏ ପରିବାରର ପରମ୍ପରା । ତେଣୁ ଶିଶୁ ଗଙ୍ଗାଧର ଯେତେବେଳେ ପରିବାରର ଜ୍ୟେଷ୍ଠ ପୁତ୍ରର ଏକମାତ୍ର ନନ୍ଦନ ରୂପେ ଜନ୍ମ ଗ୍ରହଣ କରିଥିବେ ତାଙ୍କୁ ପରିବାରର ସ୍ନେହ ସହିତ ଏକ ଉନ୍ନତ ମଧ୍ୟବିତ୍ତ ପରିବାରର ସେବା ଯତ୍ନ ସବୁ ମିଳିଥିବ । ଆଶ୍ଚର୍ଯ୍ୟର ବିଷୟ କବିଙ୍କ ସଂକ୍ଷିପ୍ତ ଆତ୍ମଚରିତ ଅଥବା ଭଗବାନ ମେହେରଙ୍କ ପିତୃପ୍ରସଙ୍ଗ ବାହିରେ ହେଲେ ଏ ବିଷୟରେ ନିର୍ଦ୍ଦିଷ୍ଟ ଉଲ୍ଲେଖ ନାହିଁ । (ଏ ପ୍ରସଙ୍ଗରେ ଅଧିକ ଆଲୋଚନା ପାଇଁ ପରବର୍ତ୍ତୀ ଅନୁଚ୍ଛେଦ ଦ୍ରଷ୍ଟବ୍ୟ)

ଏ ପ୍ରସଙ୍ଗରେ ଏହା ସ୍ମରଣୀୟ ଯେ ଏହି ସମୟରେ ବରପାଲିରେ ଶିକ୍ଷାର ବିକାଶ ନିମିତ୍ତ କୌଣସି ସୁବ୍ୟବସ୍ଥା ନଥିଲା । ଗ୍ରାମର ଚାଟଶାଳୀରେ ବର୍ଣ୍ଣ ପରିଚୟ, ଭାଗବତ, ମଥୁରାମଙ୍ଗଳ ଓ ଗୋପୀଭାଷା ପାଠ, ଲିଖନ, ଗଣିତ ଓ ପ୍ରାଥମିକ ହିସାବ ସୂତ୍ର ସହ ୨୫ ଟଙ୍କା ପର୍ଯ୍ୟନ୍ତ କଷା ଶିକ୍ଷା ଦିଆଯାଉଥିଲା । ଏହା ଥିଲା ପ୍ରଥମ ଶ୍ରେଣୀର ପାଠ୍ୟ । ଏହାପରେ ଛାତ୍ରମାନେ ସରକାରୀ ସ୍କୁଲରେ ଯୋଗଦେଇ ଦ୍ୱିତୀୟରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପଢିବା ଅବସରରେ ଭର୍ଣ୍ଣାକ୍ୟୁଲର ମିଡ଼ିଲ ସ୍କୁଲର ପାଠ୍ୟକ୍ରମ ଅନୁଯାୟୀ ସାହିତ୍ୟ, ଗଣିତ, ଇତିହାସ, ଭୂଗୋଳ ପ୍ରଭୃତି ବିଷୟ ଅଧ୍ୟୟନ

କରୁଥିଲେ । ପଞ୍ଚମ ଶ୍ରେଣୀ ଶିକ୍ଷା ଶେଷରେ ନର୍ମାଲ ପରୀକ୍ଷା ଦେବାପାଇଁ କେନ୍ଦ୍ର ଥିଲା ସମ୍ବଲପୁରରେ ।

## ଗଙ୍ଗାଧରଙ୍କ ବାଲ୍ୟକାଳ :

ଗଙ୍ଗାଧରଙ୍କ ବାଲ୍ୟକାଳର କୌଣସି ଉଲ୍ଲେଖଯୋଗ୍ୟ ଘଟଣା ପରିଜ୍ଞାତ ନୁହେଁ । ଆତ୍ମ-ଜୀବନୀରେ କବି ଲେଖିଛନ୍ତି—"ମୋର ସ୍ମରଣ ହେଉଅଛି, ବାଲ୍ୟକାଳରେ ପିତାମହଙ୍କ ସଙ୍ଗେ ସୂର୍ଯ୍ୟୋଦୟ ପୂର୍ବରୁ ସ୍ନାନ କରି ପ୍ରତ୍ୟହ ଜଗନ୍ନାଥ ଦର୍ଶନ କରି ଆସୁଥିଲି ଓ ପିତୃବ୍ୟଙ୍କ ସଙ୍ଗେ ସନ୍ଧ୍ୟା ସମୟରେ ଜଗନ୍ନାଥ ମନ୍ଦିରରେ ସଂକୀର୍ତ୍ତନରେ ଯୋଗ ଦେଉଥିଲି । ପିତାମହୀ ଓ ମାତାଙ୍କ ଠାରୁ ଶୁଣିଛି ଯେ ଶୈଶବକାଳରେ ମଧ୍ୟ ମୁଁ ବଡ଼ ଧୀର ସ୍ୱଭାବ ଥିଲି ଏବଂ ଗୋଟିଏ ଛୋଟ ମୃଦଙ୍ଗ ଧରି ସଂକୀର୍ତ୍ତନ ବାଲାଙ୍କ ସଙ୍ଗେ ନାଚୁଥିଲି । ଏହି ପ୍ରାତଃସ୍ନାନର ଅଭ୍ୟାସ, ଧୀର ସ୍ୱଭାବ ଏବଂ ଦେବତା-ସମ୍ପର୍କ ସହିତ ସଂକୀର୍ତ୍ତନର ସଙ୍ଗୀତ ଶିଶୁଟିର ପ୍ରାଥମିକ ଜୀବନରେ ଗଢ଼ିଥିଲା ତାଙ୍କର ଦେହ, ମନ ଓ ଆତ୍ମାକୁ—ଅନ୍ୟ କଥାରେ ତାଙ୍କର ସାମଗ୍ରିକ ସତ୍ତାକୁ ।

ଆତ୍ମଜୀବନୀର ଏହି ସଂକ୍ଷିପ୍ତ ଉଲ୍ଲେଖ ମଧ୍ୟରୁ ବ୍ୟକ୍ତିତ୍ୱ ଗଠନର ଏହି ମୌଳିକ ପ୍ରଭାବ ଗୁଡ଼ିକର ସୂତ୍ରଭିତ୍ତିରେ ବ୍ୟାପକତର ପରିଚୟ ସଂଗ୍ରହ କରି ଭଗବାନବାବୁ ଏ ପ୍ରତିଭାର ମୂଲ୍ୟାୟନ ପାଇଁ ଅଧିକ ସାମଗ୍ରୀ ଯୋଗାଇ ପାରିଥାନ୍ତେ । କିନ୍ତୁ ଗଙ୍ଗାଧର ଚର୍ଚ୍ଚାରେ ଅହେତୁକ ସଂକ୍ଷିପ୍ତୀକରଣର ଶରବ୍ୟ ହୋଇପଡ଼ିବାରୁ ତାଙ୍କ ବାଲ୍ୟକାଳର ମୂଲ୍ୟ ବହୁସଂଖ୍ୟ ଘଟଣା ହେଇଛି ତାଙ୍କ ଶିକ୍ଷା । ତଥାପି ସେମାନଙ୍କ ଆଲୋଚନା ପୂର୍ବରୁ ଏକ ଉଲ୍ଲେଖଯୋଗ୍ୟ ବିଷୟ ହେଉଛି ଯେ ଶୈଶବରେ ଅଥବା ପରବର୍ତ୍ତୀ ସମୟରେ ଗଙ୍ଗାଧରଙ୍କ ଜୀବନରେ କୌଣସି ରୋଗ ବା ଦୀର୍ଘକାଳସ୍ଥାୟୀ ଦୁଃଖ-ଜନକ ଶାରୀରିକ ଅସ୍ୱାସ୍ଥ୍ୟ ଘଟିନାହିଁ । ଗଙ୍ଗାଧରଙ୍କ ଦେହରକ୍ଷାର ଅଭ୍ୟାସ ସହିତ ସାବଲୀଳ ଓ ମାନସିକ ଶୁଚି ଅବଶ୍ୟ ଏହାର କାରଣ । ତାଙ୍କର ଯେଉଁ ଗୋଟି ଫଟୋ ଆମେ ଦେଖିବାକୁ ପାଉଛୁଁ ତହିଁରେ ଏକ ସୁସ୍ଥ ଓ ସୁଗଠିତ ବ୍ୟକ୍ତିର ଛବି ଅଛି । ତାଙ୍କର ପରିଣତ ଜୀବନରେ (୬୫ ବର୍ଷ ପରବର୍ତ୍ତୀ ସମୟରେ) ଯେଉଁମାନେ ତାଙ୍କ ସଂସ୍ପର୍ଶରେ ଆସିଥିଲେ ସେମାନେ ତାଙ୍କ ରୂପ ବିଷୟରେ କହିଛନ୍ତି ଯେ ଗଙ୍ଗାଧରଙ୍କ ଦେହର ରଙ୍ଗ ଥିଲା ସଫା ଗୋରା । ଉଚ୍ଚତା ଥିଲା ପ୍ରାୟ ୫ଫୁଟ ୭ଇଞ୍ଚ । ସେ ମେଦବହୁଳ ନଥିଲେ କିନ୍ତୁ ଦେହ ବଳିଷ୍ଠ ଓ ହୃଷ୍ଟପୁଷ୍ଟ ଥିଲା ଏବଂ ସାଧାରଣତଃ ତାଙ୍କର ଚିର ହାସ୍ୟମୁଖ ରୂପ ମଧ୍ୟରେ ଦୁଃଖ ନୈରାଶ୍ୟ ପରିବର୍ତ୍ତେ

ଉପଲବ୍ଧ ହେଉଥିଲା ଏକ ଧୀର-ସରଳ-ସଂଯତ-ଅନନ୍ୟ-ହସ୍ତାହ୍ଳମୟ ପ୍ରଜ୍ଞାବନ୍ତ ବ୍ୟକ୍ତିତ୍ୱ । ସ୍ୱୀକାର କରିବାକୁ ହେବ ସେମାନେ ତାଙ୍କର ପ୍ରୌଢ଼ ଜୀବନର ବିକଶିତ ରୂପ ହିଁ ଦେଖିଥିଲେ; କିନ୍ତୁ ବାଲ୍ୟକାଳର ଜୀବନରେ ସେହି ସେହି ଶାନ୍ତିର-ମାନସ-ଚରିତର ଛାପ୍ପା ଅବଶ୍ୟ ଦେଖା ଯାଇଥିବ ବୋଲି ସମ୍ଭାବନା କରିବାର ଯଥାର୍ଥ୍ୟ ରହିଛି ।

## ଗଙ୍ଗାଧରଙ୍କ ଶିକ୍ଷା :

ଚୈତନ୍ୟ ମେହେରଙ୍କ ନିଜେ ଥିଲେ ଜଣେ ଚାଟଶାଳୀ ଶିକ୍ଷକ । ଗଙ୍ଗାଧରଙ୍କ ଜନ୍ମ ପୂର୍ବରୁ ଚାଲି ଆସିଥିବା ତାଙ୍କ ଚାଟଶାଳୀଟି ବନ୍ଦ ହୋଇଯିବାରୁ ଗଙ୍ଗାଧର ଅନ୍ୟ ଜଣେ ଶିକ୍ଷକଙ୍କ ଚାଟଶାଳୀରେ ୭।୮ ବର୍ଷ ବୟସରେ ବିଦ୍ୟାରମ୍ଭ କଲେ । ଅଳ୍ପ ସମୟ ପରେ ସେ ଚାଟଶାଳୀ ମଧ୍ୟ ବନ୍ଦ ହେବାରୁ ଚୈତନ୍ୟ ମେହେର ତାଙ୍କୁ ନାମ ଚନ୍ଦ୍ରୀକା ପଢ଼ାଇବାକୁ ଆରମ୍ଭ କଲେ । କ୍ରମେ ଏହା ପୁଣି ଏକ ଚାଟଶାଳୀରେ ପରିଣତ ହେଲା । ଏହି ଚାଟଶାଳୀରେ ଗଙ୍ଗାଧର ପଢ଼ିଥିଲେ ଭାଗବତ, ମଥୁରାମଙ୍ଗଳ, ପ୍ରଭୃତି ଗ୍ରନ୍ଥଗୁଚ୍ଛ ଓ ୨୫ ଛନ୍ଦା ପଶିକିଆ । ତାପରେ ତାଙ୍କୁ ସ୍କୁଲରେ ପଢ଼ାଇବା କଥା । କିନ୍ତୁ ଦଶବର୍ଷ ବେଳେ ବାଲ୍ୟ ବିବାହ, ଅବଧାନଙ୍କ କଠୋର ଶାସନ ଏବଂ ସେ କାଳରେ ବାଚତାମୂଳକ ପ୍ରାଇମେରୀ ଶିକ୍ଷା ସମ୍ପର୍କିତ ଅସୁବିଧା ସହିତ ଚୈତନ୍ୟ ମେହେରଙ୍କ ନିଜ ଗୋଳମାଳିଆ ପାରିବାରିକ ପରିସ୍ଥିତିରେ ୧୮୭୫ ପର୍ଯ୍ୟନ୍ତ କଟିଗଲା ।

ଏହି ବର୍ଷ ବରଗଡ଼ ତହସିଲଦାରଙ୍କ ପ୍ରଭାବ ଓ ବାଧ୍ୟବାଧକତାରେ ଗଙ୍ଗାଧର ସ୍କୁଲରେ ନାମ ଲେଖାଇ ଛାତ୍ର ହେଲେ । ହିସାବରେ ଗଙ୍ଗାଧରଙ୍କ ମୋଟ ଆନୁଷ୍ଠାନିକ ଛାତ୍ରଜୀବନର ବ୍ୟାପ୍ତି ତିନିବର୍ଷ । ୧ମ, ୨ୟ, ୩ୟ ଓ ଚତୁର୍ଥ ଶ୍ରେଣୀ ପାଇଁ ଲାଗିଲା ଛଅମାସ ଲେଖାଏଁ । କେବଳ ୫ମ ଶ୍ରେଣୀରେ ବର୍ଷଟିଏ ସେ ପଢ଼ିଥିଲେ । ଏ ମଧ୍ୟରେ ସକାଳ ବେଳା ସ୍କୁଲ ସହିତ ଅପରାହ୍ଣରେ ବସ୍ତ୍ରବୟନ ପାଇଁ ପିତାଙ୍କ ଆବେଦନ କ୍ରମେ ହେଡ୍‌ମାଷ୍ଟରଙ୍କ ଠାରୁ ଅନୁମତି ମଧ୍ୟ ମିଳିଥିଲା । ପଞ୍ଚମ ଶ୍ରେଣୀ ପରେ ଶେଷ ପରୀକ୍ଷା ପାଇଁ କେନ୍ଦ୍ର ଥିଲା ସମ୍ବଲପୁର । ବାଳକ ପୁତ୍ର ପକ୍ଷରେ ବର୍ଷାକାଳରେ ସେ ଯୁଗର ବନ୍ୟା ପ୍ଲାବିତ ମହାଭୟଙ୍କର ମହାନଦୀ ଅତିକ୍ରମ କରିବା ପିତାଙ୍କ ମନୋମତ ନ ହେବାରୁ ପରୀକ୍ଷାଦେବା ବନ୍ଦ ହେଲା ।

ଏହି ସଂକ୍ଷିପ୍ତ ଛାତ୍ର ଜୀବନର ଇତିବୃତ୍ତରୁ ଏହା ସ୍ପଷ୍ଟ ଯେ ଗଙ୍ଗାଧର ଏକ

ମେଧାବୀ ବାଳକ ଥିଲେ । ତାଙ୍କ ପିତାଙ୍କର ଲକ୍ଷ୍ୟ ଥିଲା ଦ୍ୱିମୁଖୀ । ପ୍ରଥମତଃ ଗଙ୍ଗାଧର ପଢନ୍ତୁ ଏହା ସେ କାମନା କରୁଥିଲେ, ତଥାପି ତାଙ୍କୁ ଅଧ୍ୟୟନର ଅନୁକୂଳ ଅବସ୍ଥା ଯୋଗାଇ ଦେଇପାରୁ ନଥିଲେ । ଦ୍ୱିତୀୟତଃ ପୁଅର ଭବିଷ୍ୟତ ତଥା ପରିବାରର ପ୍ରୟୋଜନ ଦୃଷ୍ଟିରୁ କୌଳିକ ବୃତ୍ତିରେ ତାଲିମ ପାଇଁ ଗଙ୍ଗାଧରଙ୍କୁ ନିୟୋଜିତ କରିବା ମଧ୍ୟ ଥିଲା ତାଙ୍କର ଉଦ୍ଦେଶ୍ୟ । ବରଂ ଗଙ୍ଗାଧରଙ୍କ ହାତର ଶିଳ୍ପ-ନୈପୁଣ୍ୟ ବଜାରରେ ଅଧିକ ଆଦୃତ ହେବା ଫଳରେ ଏହା ହିଁ ହୋଇଯାଇଥିବ ତାଙ୍କର ମୁଖ୍ୟ ଲକ୍ଷ୍ୟ । ଏହାଛଡ଼ା ଏହି ଗୁଣୀ ପୁଅର ସୁନ୍ଦର ହସ୍ତାକ୍ଷର ଯୋଗୁଁ ତମସୁକ ଦଲିଲ ଲେଖା ମଧ୍ୟ ହେଲା ଉପାର୍ଜନର ଅପର ପନ୍ଥା । କବି ନିଜେ ଉଲ୍ଲେଖ କରିଛନ୍ତି ଯେ ତାଙ୍କ ପିତା ଏହି ସମସ୍ତରୁ ବସ୍ତ୍ରବୟନ କର୍ମରୁ ଏକ ପ୍ରକାର ନିଷ୍କୃତି ପାଇ ସାଧୁକାଙ୍ଗ ଓ ବୈଦ୍ୟବୃତ୍ତିରେ ଆତ୍ମନିୟୋଗ କଲେ । ତେଣୁ ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ଗଙ୍ଗାଧରଙ୍କ ମେଧା, ଆଗ୍ରହ ଓ ଉତ୍ସାହ ସତ୍ତ୍ୱେ ତାଙ୍କ ପିତାଙ୍କର ପ୍ରତିକୂଳ ବିଚାର ତଥା ବ୍ୟବସ୍ଥା ଯୋଗୁଁ ତାଙ୍କର ଧାରାବାହିକ ଆନୁଷ୍ଠାନିକ ଶିକ୍ଷା ଅକାଳରେ ସାଙ୍ଗ ହେଲା । ଉଲ୍ଲେଖଯୋଗ୍ୟ ଯେ ୧୮୬୦ ବେଳକୁ ଓଡ଼ିଶାରେ ଆଧୁନିକ ଶିକ୍ଷାର ପ୍ରଚଳନ ପାଇଁ ନିର୍ଦ୍ଦିଷ୍ଟ ଉଦ୍ୟମ ହେବା ସଙ୍ଗେ ସଙ୍ଗେ ସମ୍ବଲପୁର ଅଞ୍ଚଳରେ ମଧ୍ୟ ଶିକ୍ଷା-ପ୍ରସାର କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା । ସମ୍ବଲପୁର ଜିଲ୍ଲାରେ ହାଇ ଇଂରାଜୀ ବିଦ୍ୟାଳୟର ପ୍ରତିଷ୍ଠା ହେଲା ୧୮୬୪ ଖ୍ରୀଷ୍ଟାବ୍ଦରେ । ଗଙ୍ଗାଧର ଉଚ୍ଚତର ଶିକ୍ଷାର ସୁଯୋଗ ପାଇଥିଲେ କ'ଣ ହୋଇଥାନ୍ତା ତାହା ଆଜି କେବଳ ଏକ ଅବାସ୍ତବ ସମ୍ଭାବନା ମାତ୍ର ।

୧୮୭୮ରେ ଗଙ୍ଗାଧର ଗୃହସ୍ଥ ହେଲେ । ତଥାପି ୧୮୮୬ରେ ବରପାଲିର ହେଡ୍‌ମାଷ୍ଟର ଲକ୍ଷ୍ମଣ ମିଶ୍ରଙ୍କ ପ୍ରରୋଚନାରେ ପଞ୍ଚମ ଶ୍ରେଣୀ ପରୀକ୍ଷା ଦେଲେ ସମ୍ବଲପୁରରେ । ଗଣିତରେ ନମ୍ବର କମିଯିବାରୁ ପାଠଶାଳା ପରୀକ୍ଷା ଉତ୍ତୀର୍ଣ୍ଣ ହେବାର ସାର୍ଟିଫିକେଟ ମାତ୍ର ମିଳିଲା ।

ଏହି ଚାରି ବର୍ଷର ଛାତ୍ର ଜୀବନରେ ସେକାଳର ପାଠ୍ୟ ନିର୍ଘଣ୍ଟ ଅନୁଯାୟୀ ସେ ଯାହା ପଢ଼ିଥିଲେ ତାହା ମଧ୍ୟରେ ସାହିତ୍ୟ ରୂପେ ଭାଗବତ, ଗୋପୀଭାଷା, ନାମଚିନ୍ତାମଣି, ମଥୁରାମଙ୍ଗଳ ବ୍ୟତୀତ ସ୍କୁଲପାଠ ୧ମ, ୨ୟ ଓ ୩ୟ ଏବଂ ଦୁଇ ଭାଗରେ କାଦମ୍ବରୀ ସହିତ ସଂକ୍ଷିପ୍ତ ଉତ୍କଳ ବ୍ୟାକରଣ ପଢା ହୋଇଥିଲା । ଷଷ୍ଠ ଶ୍ରେଣୀରେ ଖୁବ୍ ସ୍ୱଳ୍ପକାଳ ପାଇଁ ପଢିଥିଲେ ରଘୁବଂଶ । ଏ ପାଠ୍ୟ ପୁସ୍ତକ ଗୁଡ଼ିକରେ ତତ୍‌କାଳୀନ ନବ୍ୟ ଓଡ଼ିଆର ସ୍ୱଚ୍ଛନ୍ଦ ଧାରା ନଥିଲା । ତେଣୁ ଗଙ୍ଗାଧରଙ୍କ ଏ ଶିକ୍ଷା ତାଙ୍କର ସାହିତ୍ୟିକ ଉତ୍କର୍ଷ ପାଇଁ ଯଥେଷ୍ଟ ଅନୁକୂଳ ନଥିଲା । ସେତେବେଳେ

ସମ୍ବଲପୁରଜିଲ୍ଲା ମଧ୍ୟପ୍ରଦେଶର ଅନ୍ତର୍ଗତ ଥିବାରୁ ଏ ଜିଲ୍ଲାରେ ଶିକ୍ଷା ଓ ପାଠ୍ୟ ନିର୍ଘଣ୍ଟ ଓଡ଼ିଶାଠାରୁ ଭିନ୍ନ ଥିଲା । ଏହାର ପ୍ରଭାବରେ ଓଡ଼ିଆ ସାହିତ୍ୟ ପରିପ୍ରେକ୍ଷୀରେ ଗଙ୍ଗାଧରଙ୍କ ଭାବ-ସଂଗଠନ ମୁଖ୍ୟତଃ ପ୍ରାଚୀନର ଅଭିମୁଖୀ ହେବା ଏକ ପ୍ରକାର ସ୍ୱାଭାବିକ ପରିଣତି । ରାଧାନାଥ ଓ ମଧୁସୂଦନ ଆଧୁନିକ ଇଂରାଜୀ ଶିକ୍ଷା ଲାଭ କରି ଓଡ଼ିଶାର ପୂର୍ବାଞ୍ଚଳରେ ନବ୍ୟ ଆଧୁନିକ ଭାବଧାରାର ଅନ୍ତଃବର୍ତ୍ତୀ ହେବା ସଙ୍ଗେ ସଙ୍ଗେ ବଙ୍ଗୀୟ ସାହିତ୍ୟର ପ୍ରେରଣାକ୍ରମେ ଯେଉଁ ଦିଗରେ ଅଗ୍ରସର ହେଲେ ତାହା ହିଁ ଥିଲା ଯୁଗସନ୍ଧିର ପ୍ରାଣସ୍ପନ୍ଦନ । ଗଙ୍ଗାଧର ଥିଲେ ସେ ସ୍ପନ୍ଦନ-କେନ୍ଦ୍ରର ବହୁ ଦୂରରେ ପ୍ରାଚୀନ ଧାରାର ଅନୁବର୍ତ୍ତନରେ । ଇଂରାଜୀ ଶିକ୍ଷାର ଅଭାବ ଯୋଗୁଁ ତାଙ୍କ ମେଧା ପାଇଁ ନବ୍ୟ ପ୍ରଭାବ ଏକ ପ୍ରକାର ଅର୍ଥହୀନ ଥିଲା କହିଲେ ଚଳେ । ତାଙ୍କର ସାହିତ୍ୟିକ ଉନ୍ମେଷ ପରିପ୍ରେକ୍ଷୀରେ ଏହା ସର୍ବାଦୌ ସ୍ମରଣୀୟ ।

## ଗଙ୍ଗାଧରଙ୍କ ଅଣ-ଆନୁଷ୍ଠାନିକ ଶିକ୍ଷା :

ସାମ୍ପ୍ରତିକ କାଳରେ ଆନୁଷ୍ଠାନିକ ଶିକ୍ଷା ପାସ୍ ଓ ଡିଗ୍ରୀର ସାମାଜିକ ସ୍ୱୀକୃତି ଯୋଗୁଁ ଅଣ-ଆନୁଷ୍ଠାନିକ ଶିକ୍ଷା ପ୍ରତି ଯଥେଷ୍ଟ ଗୁରୁତ୍ୱ ଦିଆ ଯାଉନାହିଁ । ସାକ୍ଷରତା ଅଭାବ ଥିଲେ ହେଁ ବୟସ୍କ ବ୍ୟକ୍ତି ଜୀବନର ବହୁ ଅଭିଜ୍ଞତା ଓ ଘାତ ପ୍ରତିଘାତର ଅନୁଭୂତି ମାଧ୍ୟମରେ ଜୀବନ ବିଦ୍ୟାଳୟରେ ମଧ୍ୟ ସୁଶିକ୍ଷିତ ହୋଇଥାଏ, ଏହା ଏକ ସତ୍ୟ କିନ୍ତୁ ସାକ୍ଷରତା ପରିପ୍ରେକ୍ଷୀରେ ଏହାକୁ ପ୍ରାଧାନ୍ୟ ଦେଇ ବିଚାର କରାଯାଇ ନ ଥାଏ । ଏହା ଛଡ଼ା ସ୍କୁଲ କଲେଜରେ ନାମ ନ ଲେଖାଇ ମଧ୍ୟ ନିଜ ଚେଷ୍ଟାରେ ଘରେ ଅଧ୍ୟୟନ କରିବାରେ ବାଧା ନାହିଁ । ଗଙ୍ଗାଧର ଠିକ୍ ଏହି ଧରଣର ଶିକ୍ଷା ପାଇଥିଲେ । ଏକ ପ୍ରତିକୂଳ ଜୀବନ ପରିସ୍ଥିତିରେ ସେ ଯେଉଁ ଅଧ୍ୟବସାୟ କରିଛନ୍ତି, ତାହା ତାଙ୍କର ଜ୍ଞାନ ଏବଂ ବୁଦ୍ଧିର ବିକାଶରେ ପ୍ରବଳ ଭାବେ ସହାୟତା କରିଛି ।

ମାତ୍ର ଷୋହଳ ବର୍ଷ ବୟସରେ ସସ୍ତ୍ରୀକ ଗୃହୀ ହୋଇ ଏକ ଛଅ ସାତ ଜଣିଆ ପରିବାରର ଗ୍ରାସାଚ୍ଛାଦନ ବ୍ୟବସ୍ଥା କରିବା ନିମିତ୍ତ ଚନ୍ଦ୍ର ଗ୍ଭଳନା ତଥା ତମସୁକ ଲେଖାଲେଖି କରିବା ସଙ୍ଗେ ସଙ୍ଗେ ସେ ଗ୍ରନ୍ଥପାଠକୁ ଆପଣାର କୌତୁକ ବିଳାସ (Hobby) ରୂପେ ଗ୍ରହଣ କରିଥିଲେ ବୋଲି କହିଲେ ସଙ୍ଗତ ହେବ । ତାଙ୍କର ସୌଭାଗ୍ୟକ୍ରମେ ଏହି ସମୟରେ ମୂଳବସନ୍ତ ନିବାସୀ ପଣ୍ଡିତ ଘନଶ୍ୟାମ ମିଶ୍ର ବରପାଲି ସ୍କୁଲର ଶିକ୍ଷକ ହୋଇ ଆସିଲେ । ମିଶ୍ର ମହାଶୟଙ୍କର ଓଡ଼ିଆ ଓ

ସଂସ୍କୃତ ବିଭାଗରେ ପ୍ରବେଶ ଥିଲା । ଅଧିକନ୍ତୁ ସେ ଛାତ୍ରବତ୍ସଳ ଥିବାରୁ ଛାତ୍ର-କଲ୍ୟାଣ କଳ୍ପେ ସକାଳେ ଓ ରାତିରେ ମଧ୍ୟ ଅଧ୍ୟାପନା କରୁଥିଲେ । କେତେ କେତେ ଗରିବ ଛାତ୍ର ଶିକ୍ଷକଙ୍କ ଘରେ ଆହାର କରି ରାତିରେ ସେଠାରେ ଶୋଉଥିଲେ ବୋଲି ଗଙ୍ଗାଧର ଉଲ୍ଲେଖ କରନ୍ତି । ଏହି ସୁଯୋଗରେ ଗଙ୍ଗାଧର ଯେଉଁ ଅଣ-ଆନୁଷ୍ଠାନିକ ଅଧ୍ୟୟନ କରିଥିଲେ ତାହା ମଧ୍ୟରେ ବଳରାମଦାସଙ୍କ ରାମାୟଣ, ରଘୁବଂଶ, ଲାବଣ୍ୟବତୀ, ସୁଭଦ୍ରା ପରିଣୟ, ରସିକ ହାରାବଳୀ, ବୈଦେହୀଶ ବିଳାସ ଓ ରସକଲ୍ଲୋଳ ଅନ୍ତର୍ଭୁକ୍ତ ଥିଲା । ଏହା ଅପେକ୍ଷା ଆହୁରି ଅଧିକ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଯେ ସେ 'ସୂତ୍ରସାର' ଏବଂ 'ସିଦ୍ଧାନ୍ତ ଚନ୍ଦ୍ରିକା' ନାମକ ଦୁଇଖଣ୍ଡି ସଂସ୍କୃତ ବ୍ୟାକରଣରେ ସୂତ୍ରଗୁଡ଼ିକ ମଧ୍ୟ ଅଭ୍ୟାସ କରି ନେଇଥିଲେ । ସ୍କୁଲ ଛାଡ଼ିବା ପରେ ଏବଂ ଚାକିରି ଆରମ୍ଭ ପୂର୍ବରୁ ସେ ଏସବୁ ଗ୍ରନ୍ଥ ଅଧ୍ୟୟନ କରିଥିବା ଉଲ୍ଲେଖ କରନ୍ତି । ୧୮୮୫ ପରବର୍ତ୍ତୀ ପ୍ରାୟ ୪୦ ବର୍ଷ ଜୀବନକାଳ ମଧ୍ୟରେ ସେ ଆଉ କ'ଣ କେବେ ପଢିଥିଲେ କି ନାହିଁ ତାର ବିବରଣୀ ଆତ୍ମଜୀବନୀରେ ନାହିଁ । କିନ୍ତୁ ତାଙ୍କର ସାହିତ୍ୟିକ ଉପଜୀବ୍ୟ ବସ୍ତୁ ମଧ୍ୟରେ କାଳିଦାସଙ୍କ ରଘୁବଂଶ, ଅଭିଜ୍ଞାନ-ଶାକୁନ୍ତଳମ୍, ବାଲ୍ମୀକିଙ୍କ ରାମାୟଣ, ଉତ୍ତର ରାମଚରିତ, ଭାଗବତ, ରାମ ଚରିତ-ମାନସ, ସାରଳା ମହାଭାରତର ଛାୟା ଅତ୍ୟନ୍ତ ସ୍ପଷ୍ଟ । ଅନେକ ସମାଲୋଚକଙ୍କ ମତରେ ସେ ଆମର ଏହି ପୁରାଣ କାବ୍ୟ-ନାଟକଗୁଡ଼ିକ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଏବଂ ଅନ୍ୟାନ୍ୟ ସାହିତ୍ୟ-ସାଧକଙ୍କ ଅନୁବାଦ ହିଁ ଅଧ୍ୟୟନ କରିଥିଲେ । କିନ୍ତୁ ତାଙ୍କ କାବ୍ୟର ବିଷୟ-ବିନ୍ୟାସ ତଥା ବର୍ଣ୍ଣନା ଉଭୟରେ ଆମର ପ୍ରାଚୀନ ରଚନାମାନଙ୍କର ଆଲେଖ୍ୟ ସବୁ ଯେପରି ବହୁସ୍ଥାନରେ ଅବିକୃତ ମୂଳରୂପ ନେଇ ଅଙ୍କିତ ହୋଇଛି, ତହିଁରୁ ସୂଚନା ମିଳେ ଯେ ସେ ଅନୁବାଦ ସହିତ ମୂଳଗ୍ରନ୍ଥ ସବୁ ମଧ୍ୟ ଅଧ୍ୟୟନ କରିଥିବେ । ଭଗବାନବାବୁଙ୍କ ରଚିତ ପିତୃପ୍ରସଙ୍ଗରେ ସ୍ପଷ୍ଟ ଉଲ୍ଲେଖ ଅଛି ଯେ ତାଙ୍କର ବହୁ ସଂସ୍କୃତ ଶ୍ଳୋକ କଣ୍ଠସ୍ଥ ଥିଲା ଏବଂ ତାଙ୍କ ନିଜ ରଚନା ପ୍ରସଙ୍ଗରେ ଏହି ଶ୍ଳୋକଗୁଡ଼ିକ ଉଦ୍ଧାର କରି ସେ ବୁଝାଇ ଦେଇ ପାରୁଥିଲେ । ଏହି ତଥ୍ୟରେ ଅସ୍ୱାଭାବିକତା ଆଦୌ ନାହିଁ । କାରଣ ଯେ ଥରେ ଦୁଇ ଖଣ୍ଡି ସଂସ୍କୃତ ବ୍ୟାକରଣର ସୂତ୍ରଗୁଡ଼ିକୁ ପ୍ରାଚୀନ ଟୋଲପାଠ ରୀତିରେ ଅଭ୍ୟାସ କରି ସାଧନ କରିନେବ ତା ପକ୍ଷରେ ମୂଳ ସଂସ୍କୃତର ଆକର୍ଷଣ ଏକ ପ୍ରାକୃତିକ ବ୍ୟାପାର । ଭଗବାନବାବୁ ଅଧିକ ଉଲ୍ଲେଖ କରନ୍ତି ଯେ ରାଧାନାଥଙ୍କୁ (ତାଙ୍କ ରଚିତ ବ୍ୟାକରଣ ପ୍ରବେଶର ସଂଶୋଧନ ପ୍ରସଙ୍ଗରେ) ଗଙ୍ଗାଧର କହିଥିଲେ ଯେ ସେ ଅନ୍ୟ ବ୍ୟାକରଣ ଗ୍ରନ୍ଥ ବିଦ୍ୟାସାଗରଙ୍କ 'ଉପକ୍ରମଣିକା' ଅଧ୍ୟୟନ କରିଥିଲେ । ତେଣୁ ସଂସ୍କୃତ ବ୍ୟାକରଣରେ ତାଙ୍କର ବ୍ୟୁତ୍ପତ୍ତି ନେଇ ସନ୍ଦେହର କାରଣ ନାହିଁ । ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ଦ୍ୱାରା ସଂକଳିତ 'କବିଲିପି'ର ପତ୍ରାବଳୀ ମଧ୍ୟରେ ରାଧାନାଥ ସ୍ୱୟଂ ଗଙ୍ଗାଧରଙ୍କ ବ୍ୟାକରଣ ଜ୍ଞାନ ଉପରେ ତାଙ୍କର ଆସ୍ଥା ଜ୍ଞାପନ

କରିଛନ୍ତି ଏବଂ ଗଙ୍ଗାଧରଙ୍କ ବିନୀତ ପ୍ରତ୍ୟାଖ୍ୟାନ ସତ୍ତ୍ୱେ ଗଙ୍ଗାଧରଙ୍କୁ ଏକ ପ୍ରକାର ବାଧ୍ୟ କରିଛନ୍ତି "ବ୍ୟାକରଣ ପ୍ରବେଶ"ର ଭ୍ରମସଂଶୋଧନ କରି ମନ୍ତବ୍ୟ ଜଣାଇ ଦେବାପାଇଁ । ରାଧାନାଥଙ୍କ ପରି ଲବ୍ଧପ୍ରତିଷ୍ଠ କବି, ବିଦ୍ୱାନ୍, ଓ ପଦସ୍ଥ ବ୍ୟକ୍ତିଙ୍କର ଏ ସ୍ୱୀକୃତି ଗଙ୍ଗାଧରଙ୍କ ସଂସ୍କୃତ ଜ୍ଞାନର ଡିପ୍ଲୋମା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ମେହେରଙ୍କ କାବ୍ୟ କବିତାର ଅଧ୍ୟୟନ ମୂଳରୁ ହିଁ ଲୋକପ୍ରିୟ ହୋଇ ଉଠିଛି । ଏ ଗ୍ରନ୍ଥକ ପ୍ରକାଶିତ ହୋଇଛି ଓ ସ୍କୁଲ କଲେଜର ପାଠ୍ୟ ହୋଇ ସମାଲୋଚକଙ୍କ ଦୃଷ୍ଟି ସମକ୍ଷକୁ ଆସିଛି, ତଥା ସେମାନଙ୍କ ପ୍ରଶଂସାଭାଜନ ମଧ୍ୟ ହୋଇଛି । ଗ୍ରନ୍ଥାବଳୀରେ କବିଙ୍କ ସଂକ୍ଷିପ୍ତ ଓ ଅସମ୍ପୂର୍ଣ୍ଣ ଆତ୍ମଚରିତ ମୁଦ୍ରିତ ହୋଇ ଯେ ପ୍ରଚ୍ଚରିତ ହୋଇଛି ଏହା କହିବା ବାହୁଲ୍ୟ ମାତ୍ର । କବିଲିପି ମଧ୍ୟ ମୁଦ୍ରିତ ହୋଇଛି । ଭାଷଣ-ବକ୍ତୃତା ଆକାରରେ ପତ୍ରପତ୍ରିକାରେ ତଥା ସ୍ୱତନ୍ତ୍ର ଭାବେ ରଚିତ ସମାଲୋଚନା ପୁସ୍ତକମାନଙ୍କରେ ତାଙ୍କ ବିଷୟ ଓ ସାହିତ୍ୟ ବହୁଳ ଭାବେ ଆଲୋଚିତ ହୋଇଛି । ତଥାପି ଦୁଃଖର ସହିତ ଲକ୍ଷ୍ୟ କରିବାକୁ ହୁଏ ଯେ "ମେହେରଙ୍କ ଅଧ୍ୟୟନ ପଞ୍ଚମଶ୍ରେଣୀ ପର୍ଯ୍ୟନ୍ତ ଥିଲା" ଏହି ତଥ୍ୟକୁ ତାଙ୍କ ସ୍ୱଳ୍ପ ଶିକ୍ଷାର ଅକାଟ୍ୟ ପ୍ରମାଣ ରୂପେ ଉପସ୍ଥାପନ କରିବାଲାଗି ବହୁ କୃତବିଦ୍ୟ ସମାଲୋଚକ ପଶ୍ଚାତ୍ପଦ ହେଉନାହାନ୍ତି । ତାଙ୍କର ସମଗ୍ର ସାଧନା, ଅଣ-ଆନୁଷ୍ଠାନିକ ଶିକ୍ଷା, ସଂସ୍କୃତ ଜ୍ଞାନ ଓ ପାଣ୍ଡିତ୍ୟ ଏ ସବୁ ଭିତରେ ଗଙ୍ଗାଧରଙ୍କ ଆତ୍ମକର୍ଷଣ ଜନିତ ଅବବୋଧ ଯେ "ସାର୍ଟିଫିକେଟ୍" ଶିକ୍ଷା ଅପେକ୍ଷା ମହତ୍ତର ଏହା ଆଜିଥରେ ଦୁଃଖର ସହିତ ବୁଝାଇ କହିବାକୁ ପଡ଼ୁଛି । କାହିଁ ? ସେକ୍ସପିଅର, ମିଲ୍ଟନ୍, ବାଲ୍ମୀକି, କାଳିଦାସ ଅଥବା ଆମର ଭକ୍ତ ଦୀନକୃଷ୍ଣ, ଅଭିମନ୍ୟୁ, ଭକ୍ତଚରଣ, ଯଦୁମଣି ଏସବୁ କ ଇଏଠାରୁ ମଧ୍ୟ କେତେ କ୍ଲାସ ଲେଖାଏଁ ପଢ଼ିଥିଲେ କେହି ତ କେବେ ପଚାରି ନାହିଁ । ପୁନଶ୍ଚ ଗଙ୍ଗାଧରଙ୍କ ଇଂରାଜୀ ଶିକ୍ଷାର ଅଭାବ ଯୋଗୁଁ ମଧ୍ୟ କେତେଙ୍କ ଆଖିରେ ତାଙ୍କ ଯୋଗ୍ୟତା ଊଣା ମନେହୁଏ । ଏହା ଆଂଶିକ ସତ୍ୟ ; କାରଣ ଗଙ୍ଗାଧର ଯେଉଁ ସମୟର ଲେଖକ ସେତେବେଳେ ଇଂରାଜୀ ଶିକ୍ଷାର ପ୍ରସାର ସହିତ ପାଶ୍ଚାତ୍ୟ ସାହିତ୍ୟ ସମ୍ପର୍କ ଯୋଗୁଁ ପାଠକରୁଚିରେ ବିପୁଳ ପରିବର୍ତ୍ତନ ଘଟି ଯାଉଥିଲା । ସାହିତ୍ୟିକ ଶୈଳୀରେ ଏହାର ପ୍ରଭାବ ଅଳ୍ପ ନ ଥିଲା । ତେଣୁ ଇଂରାଜୀ ଶିକ୍ଷାର ଅଭାବ ଫଳରେ ଗଙ୍ଗାଧର ସେକାଳର ଏହି ପ୍ରାଣ-ସ୍ପନ୍ଦନ ଦ୍ୱାରା ପ୍ରଭାବିତ ହେବାରେ ବହୁ ବିଳମ୍ବ ହୋଇଛି । ଏଠାରେ ମଧ୍ୟ ସ୍ମରଣୀୟ ଯେ ରାଧାନାଥଙ୍କ କାବ୍ୟ-ଶୈଳୀର ପ୍ରଭାବକୁ ନିଜସ୍ୱ କରି ନେବାରେ ଗଙ୍ଗାଧର ସ୍ୱୟଂ ଯେଉଁ ପରୀକ୍ଷା ନିରୀକ୍ଷା କରି

ଉତ୍ତୀର୍ଣ୍ଣ ହୋଇ ପାରିଥିଲେ ତାହା ତାଙ୍କ ଆହରଣ ପଟୁ ସାଧନାର ଶ୍ରେଷ୍ଠ ପ୍ରମାଣ । ପାଶ୍ଚାତ୍ୟ ଭାବଧାରା ଓ ଶୈଳୀ ସହିତ ଇଂରାଜୀ ମାଧ୍ୟମରେ ସିଧା ପରିଚିତ ହେବା ପରେ ଆହରଣ ଶିଳ୍ପୀ ରାଧାନାଥଙ୍କ ସମସ୍ୟା ଥିଲା ଆମ ପରିବେଶ ଓ ଇତିହାସରେ ତାହାର ନିପୁଣ ଆରୋପଣ ; ଗଙ୍ଗାଧରଙ୍କ ଇଂରାଜୀ ଜ୍ଞାନାଭାବ ଯୋଗୁଁ ତାଙ୍କ କାର୍ଯ୍ୟ ଥିଲା ଆହୁରି କଷ୍ଟକର । ପ୍ରାଚ୍ୟଧାରାର ବିଷୟବସ୍ତୁ ଓ ପ୍ରାଚୀନ ଶୈଳୀ ଥିଲା ତାଙ୍କର ପୁଞ୍ଜି । ରାଧାନାଥମାର୍ଗୀ ନୂତନ ଶୈଳୀର ଅବବୋଧ ପରେ ପ୍ରାଚୀନତାର ସ୍ୱାଭାବିକ ପ୍ରଭାବ ଏଡ଼ାଇ ପ୍ରାଚ୍ୟ ବିଷୟ ସମ୍ପଦର ତଥା ଆଦର୍ଶକୁ ନୂତନ ଶୈଳୀରେ ଅଭିନବ ଭାବେ ରୂପାୟିତ କରିବା ଯେପରି ଅଧିକ ସାଧନା-ସାପେକ୍ଷ, ସେହିପରି ତାହା ଉଜ୍ଜ୍ୱଳ ପ୍ରତିଭାର ସୂଚକ ।

ପ୍ରସଙ୍ଗକ୍ରମେ ଉଲ୍ଲେଖ୍ୟ ଯେ ଗଙ୍ଗାଧରଙ୍କୁ ସ୍ୱଳ୍ପ-ଶିକ୍ଷିତ ବୋଲି ପ୍ରତିପାଦନ କରିବା ନିମିତ୍ତ ଯେତେ ଉଦ୍ୟମ କରାଯାଇଛି, ବହୁ ସ୍ଥଳରେ ତାହାର ଉଦ୍ଦେଶ୍ୟ ହେଉଛି ତାଙ୍କର ପ୍ରତିଭା-ବନ୍ଦନ । ଏହି ସମାଲୋଚକମାନେ କହିବାକୁ ଚାହାନ୍ତି ଯେ ଗଙ୍ଗାଧର "କୋହିନୂର" ଭଳି ସ୍ୱକୀୟ ପ୍ରତିଭା-ପ୍ରଭାରେ ତେଜୋମୟ ଥିବାରୁ ସ୍ୱଳ୍ପ ଶିକ୍ଷା ସତ୍ତ୍ୱେ ତାଙ୍କ ସାରସ୍ୱତ ଚକ୍ଷୁର ଦିବ୍ୟଦର୍ଶନ ବଳରେ ଏତେ ମହତ୍ତ୍ୱପୂର୍ଣ୍ଣ ଓ ରସୋତ୍ତୀର୍ଣ୍ଣ କାବ୍ୟ ରଚନା କରିବାକୁ ସମର୍ଥ ହୋଇଥିଲେ । ଏଥିରେ ଗଙ୍ଗାଧରଙ୍କ ପ୍ରତିଭାର ଯେଉଁ ବନ୍ଦନା ହୁଏ ତାହା ସଙ୍ଗେ ସଙ୍ଗେ ଏହି ସାଧକ-ମାନଦ୍ୱାରା ଯେ ତଦଧିକ ଅବମାନନା କରାହୁଏ, ଏହି ସରଳ ସତ୍ୟଟି ଏହି "ସ୍ୱଭାବ କବି" ପ୍ରତିପାଦକ ସମାଲୋଚକ ଗୋଷ୍ଠୀ ବିସ୍ମୃତ ହୁଅନ୍ତି । ସଂକ୍ଷେପରେ ଏ ବିଡମ୍ବନାମୂଳକ ବ୍ୟାଜସ୍ତୁତି ଏକାନ୍ତ ପରିହାର୍ଯ୍ୟ । କାରଣ ଇଂରାଜୀ ନ ପଢ଼ିଥିଲେ ହେଁ ଗଙ୍ଗାଧର ଏକ ବହୁପାଠୀ ପଣ୍ଡିତ ଥିଲେ ।

## ଗଙ୍ଗାଧରଙ୍କ ଦାରିଦ୍ର୍ୟ !

ଗଙ୍ଗାଧରଙ୍କ ସମ୍ପର୍କରେ ଅପର ବହୁ ଆଲୋଚିତ ତଥ୍ୟ ହେଉଛି ତାଙ୍କ ଦାରିଦ୍ର୍ୟ । ତାଙ୍କ କ୍ଷୁଦ୍ର କବିତା ମଧ୍ୟରେ ଥରେ ଦୁଇଥର ନିଜ ଦରିଦ୍ରତା ଓ ଜଞ୍ଜାଳର ଉଲ୍ଲେଖ ଦେଖାଯାଏ । କିନ୍ତୁ ସର୍ବସାଧାରଣ ଆଲୋଚନାରେ ତପସ୍ୱିନୀ କାବ୍ୟର ଅତି ପରିଚିତ ଦୁଇଟି ପଂକ୍ତି "ଦରିଦ୍ରତା ପଙ୍କ ପୂର୍ଣ୍ଣ ମୋ ଜୀବନ ସାର ଜଞ୍ଜାଳ-ଜଳଦ-ଜଳେ ଆବିଳ ଉଦର" ଉଦ୍ଧୃତ ହୋଇ ଆସିଛି । ଏ ପଂକ୍ତି ଦ୍ୱୟ ଉପରେ ଗୁରୁତ୍ୱ ଦେଇ ଭାବପ୍ରବଣ ସମାଲୋଚକ ତାଙ୍କୁ "ନିଃସ୍ୱ, ନିର୍ଦ୍ଧନ,

ନରନ୍ତ, ବୁଭୁକ୍ଷୁ" ପର୍ଯ୍ୟନ୍ତ କହିବା ଲାଗି ଆଗେଇ ଆସିଛନ୍ତି । କିନ୍ତୁ ଠିକ୍ ତାର ପରବର୍ତ୍ତୀ ପଂକ୍ତି ଦ୍ୱୟ ମଧ୍ୟରେ ଗଙ୍ଗାଧରଙ୍କ ଆତ୍ମାର ସ୍ୱପ୍ରତିଷ୍ଠତା ପ୍ରକାଶିତ ହୋଇଛି—"ଶରଦ ସଦୃଶ ତୋତେ କରି ଦରଶନ, ହୋଇ ଯାଉଅଛି ସେତ ସ୍ୱତଃ ପରସନ ।" ଏ ପଂକ୍ତି ଦ୍ୱୟର ଉଲ୍ଲେଖ ବା ଉଦ୍ଧୃତି ବହୁ ସମାଲୋଚକ ଆବଶ୍ୟକ ବୋଲି ଅନୁଭବ କରୁନଥିବା ମଧ୍ୟ ଏକ ବିଡ଼ମ୍ବନା । କିନ୍ତୁ ଗଙ୍ଗାଧରଙ୍କ ବ୍ୟକ୍ତିଗତ ବଳିଷ୍ଠ ଚରିତ୍ରରେ ଦାରିଦ୍ର୍ୟ ଓ ଜଞ୍ଜାଳର ପରିଚୟ ହିଁ ଅଧିକ ସତ୍ୟ ।

ପୂର୍ବୋକ୍ତ ଅନୁଚ୍ଛେଦମାନଙ୍କରେ ପ୍ରଦର୍ଶିତ ହୋଇଛି ଯେ ଗଙ୍ଗାଧରଙ୍କ ପିତା ଏକାଧାରରେ ବସ୍ତ୍ର-ଶିଳ୍ପୀ, ଚାଟଶାଳୀ ଶିକ୍ଷକ, ବୈଦ୍ୟ ଏବଂ ଋଣଦାତା ସାହୁକାର ଥିଲେ । ଏ ସବୁ ଥିଲା ତାଙ୍କର ପୈତୃକ ବିଦ୍ୟା ; କିନ୍ତୁ ଅର୍ଥାଗମ ଦୃଷ୍ଟିରୁ ବସ୍ତ୍ରବୟନ ଥିଲା ମୁଖ୍ୟ ଉପାୟ । ଚୈତନ୍ୟ ମେହେରଙ୍କ ଆଳସ୍ୟ ଏବଂ ଅବହେଳାରେ ଏହି କାର୍ଯ୍ୟ ପ୍ରତି ଅନାଗ୍ରହୀ ହେବା ଏ ପରିବାରର ଅଭାବ ପାଇଁ କାରଣ । ଗଙ୍ଗାଧର ବସ୍ତ୍ରବୟନ କରିବାକୁ ଆରମ୍ଭ କରିବା ପରେ ଯାଇ ଘରର ଅବସ୍ଥା ସୁଧୁରି ଥିଲା । ତମସୁକ୍ ଲେଖାରୁ ବେଳେବେଳେ କିଛି ପଇସା ବି ମିଳୁଥିଲା । କିନ୍ତୁ ବୈଦ୍ୟବୃତ୍ତି ଏବଂ ସାହୁକାରୀରୁ କେତେ ଆସୁଥିଲା ତାହାର ପରିମାଣ ଅଜ୍ଞାତ । ପଚଶ ଜଣ ପର୍ଯ୍ୟନ୍ତ ପିଲାଙ୍କୁ ନେଇ ଚାଲୁଥିଲା ଯେଉଁ ଚାଟଶାଳୀ ତାହା ମଧ୍ୟ ଏକ ଉପାର୍ଜନ ପନ୍ଥା । ଏହିପରି ବହୁମୁଖୀ ଆୟପନ୍ଥା ସତ୍ତ୍ୱେ ଏ ପରିବାର ଦରିଦ୍ର ଥିଲା କିପରି ବୁଝି ହୁଏନାହିଁ । ଚୈତନ୍ୟ ମେହେର ଯେତେବେଳେ ପିତାଙ୍କ ପରିବାରରୁ ଏକ ପ୍ରକାର ବିତାଡ଼ିତ ହେଲେ, ତାହା ଅବଶ୍ୟ ଏକ ସଙ୍କଟ କାଳ । କିନ୍ତୁ ଏ ଅବସ୍ଥା ମାତ୍ର ୩ । ୪ ବର୍ଷ ପାଇଁ ରହିଥିଲା । ଗଙ୍ଗାଧରଙ୍କ ଜୀବନ ଗଠନ ନିମିତ୍ତ ଏହି ବର୍ଷ ଗୁଡ଼ିକ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ଚୈତନ୍ୟଙ୍କ ପରିବାରର ଏହି ସମୟର ଦୁରବସ୍ଥା ଗଙ୍ଗାଧରଙ୍କ ବାଲ୍ୟ ଶିକ୍ଷାର ଘୋର ଅନ୍ତରାୟ ହେଲା । କିନ୍ତୁ ପରବର୍ତ୍ତୀ ଜୀବନରେ ଗଙ୍ଗାଧର ୧୮୮୫ ରେ ସାତ ଟଙ୍କା ବେତନରେ ବରପାଲି ଜମିଦାରଙ୍କ ଅମିନ କାର୍ଯ୍ୟ ଆରମ୍ଭ କଲାପରେ ତାଙ୍କ ଆର୍ଥିକ ଅବସ୍ଥାର ଏକ ନିର୍ଦ୍ଦିଷ୍ଟ ମୋଡ଼ ଆସିଲା । ଏ ସାତ ଟଙ୍କା କ୍ରମେ ୮ । ୧୦ । ୧୫କୁ ବଢ଼ିଲା ଏବଂ ଶେଷରେ ୧୮୯୯ ରେ ଜୁଡ଼ିସିଏଲ୍ ମୋହରିର ଚାକିରି ପାଇବା ପରେ ସେହି ୧୫ ଟଙ୍କା ହିଁ ଥିଲା । ଅବଶ୍ୟ ଏହା ସହିତ ଜମିଦାରଙ୍କ ମାଲ୍ ମୋହରିର କାମର ପାରିଶ୍ରମିକ ୭ ଟଙ୍କା ମଧ୍ୟ ସେ ପାଉଥିଲେ । ଶେଷରେ ୧୯୦୧ ରେ ସେ ବରପାଲିରୁ ସମ୍ବଲପୁର ଯିବା ବେଳକୁ ମଧ୍ୟ ତାଙ୍କ ମାସିକ ଆୟର ପରିମାଣ ସମାନ ଥିଲା । ସମ୍ବଲପୁର, ବଳେପୁର; ବରପାଲି, ପଦ୍ମପୁର ଏହି ଚାରୋଟି ସ୍ଥାନ

ମଧ୍ୟରେ ତାଙ୍କ କାର୍ଯ୍ୟକାଳ କଟି ଯାଇଥିଲା । କ୍ଲର୍କସିଲ୍ ମୋହରର ବାମର ଦରମା ୧୫ ରୁ ବଢ଼ିଲା ୨୦ । ୩୦ । ଟଙ୍କାକୁ ଏବଂ ୧୯୧୭ ରେ ୫୫ ବର୍ଷ ବୟସରେ ସେ ଅବସର ନେବାପରେ ପେନ୍‌ସନ୍ ପ୍ରଥମେ ପାଇଲେ ୫୧ । ପରେ ଏହା ସଂଶୋଧିତ ହୋଇ ହେଲା ମାସିକ ୫୧୧ ।

ଜଣେ ନିମ୍ନପଦସ୍ଥ କର୍ମଚାରୀର ଏ ଜୀବନ ଅପାଡ଼ତଃ ଘଟଣା ବିହୀନ । ପାରିବାରିକ କ୍ଷେତ୍ରରେ ତାଙ୍କ ପ୍ରଥମା ସ୍ତ୍ରୀ ଶାନ୍ତାଙ୍କ ପରଲୋକ, ଦ୍ୱିତୀୟା ପତ୍ନୀ ଚମ୍ପାଙ୍କ ସହିତ ବିବାହ, ଚୈତନ୍ୟ ମେହେରଙ୍କ ବିୟୋଗ ଏବଂ ଜ୍ୟେଷ୍ଠପୁତ୍ର ଅର୍ଜୁନର ଅକାଳ ବିୟୋଗକୁ ଛାଡ଼ିଦେଲେ ଆଉ କୌଣସି ଉଲ୍ଲେଖଯୋଗ୍ୟ ଘଟଣା ମଧ୍ୟ ନାହିଁ । ତେଣୁ ତାଙ୍କର ସମସ୍ତ ଜୀବନ ଥିଲା ଶାନ୍ତ, ସଂଯତ ଓ ନିୟନ୍ତ୍ରିତ । ପ୍ରକୃତରେ ଦେଖିଲେ ଗୋଟା ଗୋଟା କାବ୍ୟ କବିତା ସୃଷ୍ଟି ହିଁ ଥିଲା ତାଙ୍କ ଜୀବନର ସ୍ମରଣୀୟ ଘଟଣା କହିଲେ ଅତ୍ୟୁକ୍ତି ହେବନାହିଁ ।

ଦାରିଦ୍ର୍ୟ ପ୍ରସଙ୍ଗରେ ଦରିଦ୍ର ପିତାର ସନ୍ତାନ ହେବା ଫଳରେ ଗଙ୍ଗାଧରଙ୍କ ଜୀବନରେ ବିକାଶର ବିପୁଳ ସମ୍ଭାବନା ବ୍ୟାହତ ହୋଇଛି, ଏହା ସତ୍ୟ । କିନ୍ତୁ ୧୮୯୨ ରେ କାବ୍ୟ ରଚନା ଆରମ୍ଭ କଲାବେଳେ ୧୮୬୫ର ଦୟନୀୟ ଅବସ୍ଥା ନ ଥିଲା । ଭଗବାନ ମେହେରଙ୍କ ଉକ୍ତି ଅନୁଯାୟୀ ଏ ସମୟରେ ଟଙ୍କାରେ ଚାଉଳ ମିଳୁଥିଲା ୬୦.୭୦ ସେର । (ଅଧ କୁଇଣ୍ଟାଲରୁ ବେଶୀ) ; ଘରେ ବୁଣା ହେଉ ଥିଲା ଲୁଗା । ତେଣୁ ଧନୀ ଘରର ପ୍ରାଚୁର୍ଯ୍ୟ ନ ଥିଲେ ବି ଗ୍ରାସାଚ୍ଛାଦନର ସୁଲଭତା କ୍ଷେତ୍ରରେ ଅଭାବ ନ ଥିଲା । ପାଠପଢ଼ାର ମୋହ ପରୋକ୍ଷ ଶିକ୍ଷାରେ ପର୍ଯ୍ୟବସିତ ହେବା ପରେ ଏହି ସରଳ ଗ୍ରାମବାସୀ ସଜ୍ଜନ କବି ରାଧାନାଥଙ୍କ ରଚନା ଅଧ୍ୟୟନ ସହିତ ଅନ୍ୟାନ୍ୟ ପୁସ୍ତକ ତଥା ସମସାମୟିକ ପତ୍ରପତ୍ରିକା ପଢ଼ା-ପଢ଼ିକୁ ଆପଣାର କର୍ତ୍ତବ୍ୟ ରୂପେ ସ୍ଥିର କରି ନେଇଥିଲେ । ଫଳତଃ ସାହିତ୍ୟ ପାଠ ଓ ରଚନା ମଧ୍ୟରେ ଅବସର-ବିନୋଦନ ଏହି ଶିଳ୍ପୀ-ଆତ୍ମାର ଲକ୍ଷ୍ୟ ନିରୂପିତ ହୋଇଯିବା ଏକ ପ୍ରକାର ସ୍ୱାଭାବିକ ପରିଣତି ମନେହୁଏ ।

୧୮୮୫ ଠାରୁ ୧୯୧୭ ମଧ୍ୟରେ ଉପାର୍ଜନକ୍ଷମ ଗଙ୍ଗାଧରଙ୍କ ଜୀବନର ବିପର୍ଯ୍ୟୋନ୍ମୁଖ ଅବୌ ଉପେକ୍ଷଣୀୟ ମନେ ହୁଏନା । ଅଗ୍ନିଦଗ୍ଧ ଗୃହର ପୁନ-ର୍ନିର୍ମାଣ ସହିତ ନଅ ଟଙ୍କାରେ ବରପାଲି ଜମିଦାରଙ୍କ ଠାରୁ ସେ ଖଣ୍ଡିଏ ଜମି କିଣିଥିଲେ । ଏ ଜମିର ପରିମାଣ ଭଗବାନ ବାବୁ ଲେଖି ନାହାନ୍ତି; କିନ୍ତୁ ତାଙ୍କ

ପିତାଙ୍କ ଜୀବଦ୍ଦଶାରେ ଏ ଜମିରୁ ଉତ୍ପନ୍ନ କୃଷିଜାତ ଦ୍ରବ୍ୟରେ ବର୍ଷ କାଳ ଖାଦ୍ୟ ଚଳୁଥିଲା ବୋଲି ଲେଖିବା ସଙ୍ଗେ ସଙ୍ଗେ ପିତାଙ୍କ ପରେ ତାଙ୍କ (ଭଗବାନ ବାବୁଙ୍କ) ପରିବାରକୁ ଆହାର ଯୋଗାଇ ଆସିଛୁ ବୋଲି କୃତଜ୍ଞତା ସହ ସ୍ୱୀକାର କରିଛନ୍ତି । (ଏହା ୧୮୯୮ର ଘଟଣା— ଜୀବନ ବୃତ୍ତ ରଚନାର ପାଞ୍ଚ ବର୍ଷ ପୂର୍ବରୁ ଘଟିଥିଲା । ଦ୍ରଷ୍ଟବ୍ୟ : ପିତୃପ୍ରସଙ୍ଗ ୪୬ ପୃ :) ଗ୍ରନ୍ଥାବଳୀରେ ଅନ୍ତର୍ଭୁକ୍ତ ପଣ୍ଡିତ ରାଘବ ମିଶ୍ରଙ୍କ ଉଲ୍ଲେଖ ଅନୁଯାୟୀ ଏହି ଭୂସମ୍ପତ୍ତିର ପରିମାଣ ପ୍ରାୟ ଆଠ ଏକର । ଏହା ଛଡ଼ା କବି ସମ୍ବଲପୁରରେ ଖଣ୍ଡିଏ ଘର କିଣିଥିଲେ; ଅସୁବିଧା ଯୋଗୁଁ ଏହା ସେ ନିଜେ ୧୯୦୩ରେ ବିକ୍ରୟ କରିଥିଲେ । ବୋଡ଼ାସମ୍ବର ଜମିଦାରଙ୍କ ଦାନ ଗ୍ରାମ ଚେଣ୍ଡାପଦରରୁ କେତେ କ'ଣ ମିଳୁଥିଲା ତାହାର କୌଣସି ବିବରଣୀର ଉଲ୍ଲେଖ କୌଣସିଠାରେ ଦେଖାଯାଏ ନାହିଁ ।

ଏସବୁ ଏହିଭଳି ଉଲ୍ଲେଖ କରିବାର ଉଦ୍ଦେଶ୍ୟ ନୁହେଁ ଗଙ୍ଗାଧରଙ୍କ ପ୍ରାଚୁର୍ଯ୍ୟ ପ୍ରଦର୍ଶନ । କିନ୍ତୁ ଗଙ୍ଗାଧରଙ୍କ ଦାରିଦ୍ର୍ୟର ଯେଉଁ ଧାରଣା ପ୍ରଚ୍ଛରିତ ହୋଇଛୁ ତାହାର ସତ୍ୟତା କେତେ ତାହା ସମାଲୋଚକ ପୁଣି ଥରେ ବିଗ୍ଭର କରନ୍ତୁ ବୋଲି ଏଥିରେ ଏକ ସୂଚନା ଗର୍ଭିତ । ସମାଲୋଚକ ଡକ୍ଟର ମାୟାଧର ମାନସିଂ ତାଙ୍କର ୧୫ ପୃଷ୍ଠାର "ମେହେରଙ୍କ ମହତ୍ତ୍ୱ" ଶୀର୍ଷକ ରଚନାରେ ଏହି ସମ୍ବଲପୁରୀ କବିଙ୍କ ଦାରିଦ୍ର୍ୟ ପ୍ରତି ଅନ୍ତତଃ କୋଡ଼ିଏ ଯାଗାରେ ଅଙ୍ଗୁଳି ସଙ୍କେତ କରିଛନ୍ତି । ଅପର ପ୍ରତିଷ୍ଠିତ ସମାଲୋଚକ ଡକ୍ଟର ନଟବର ସାମନ୍ତରାୟ ତାଙ୍କ ସମାଲୋଚନାରେ ମେହେରଙ୍କ ସମଗ୍ର ଦୃଷ୍ଟିର ଯୋଜନା ଓ ରୂପାୟନ ଜମିଛି ତାଙ୍କ ଦୁଃଖ ଦାରିଦ୍ର୍ୟକୁ ତାଙ୍କର ପ୍ରେରଣା ଭୂମି ବୋଲି ଦର୍ଶାଇଛନ୍ତି । ଗଙ୍ଗାଧରଙ୍କ କାବ୍ୟଗୁରୁ ରାଧାନାଥ ତାଙ୍କ ଚଳିକା କାବ୍ୟରେ ଅନ୍ତର୍ଭୁକ୍ତ ଆତ୍ମକଥନ ମଧ୍ୟରେ ଉଚ୍ଛ୍ୱାସର ସହିତ "ଚିର ହାହାମୟ ଏ ଛାର ଜୀବନ" ପଂକ୍ତି ଗୁଡ଼ିକରେ ଜୀବନ ପ୍ରତି ଯେଉଁ ଦୃଷ୍ଟିଭଙ୍ଗୀ ପ୍ରକାଶ କରିଛନ୍ତି ତାହାର ଏକ ଅଳଂଘନୀୟ କାରଣ ବୈଷୟିକ କ୍ଷେତ୍ରରେ ତାଙ୍କର କେତେକ ବିଡ଼ମ୍ବନା । ପାଠ୍ୟପୁସ୍ତକ ନ ଲେଖି ଧନ ଲାଭରୁ ବଞ୍ଚିତ ହେଲେ ବୋଲି ସେ ପତ୍ର ଲେଖିଥିଲେ ଗଙ୍ଗାଧରଙ୍କୁ । ଶିକ୍ଷା ବିଭାଗର ସର୍ବୋଚ୍ଚ ଚାକିରି, ମୋଟା ଦରମା, ରାୟବାହାଦୁର ଉପାଧି କାହିଁରେ ଶାନ୍ତ ହେଲା ନାହିଁ ତାଙ୍କ ଦୁର୍ବାର ଇଚ୍ଛାଶା । ତାଙ୍କ ଜୀବନ ସହିତ ଗଙ୍ଗାଧରଙ୍କ ଜୀବନର କି ସାମ୍ୟ ସମ୍ଭବ ? ଗଙ୍ଗାଧର ସ୍ୱଳ୍ପବିତ୍ତ ହେଲେ ମଧ୍ୟ କୌଣସି ଠାରେ ହେଲେ ତାଙ୍କର ବିଡ଼ମ୍ବନା ଜନିତ ଅନ୍ତର୍ଦାହ ପ୍ରକାଶ ପାଇ ନାହିଁ । ସୀତା, ଶକୁନ୍ତଳାଙ୍କ ଚରିତର ଅନ୍ତର୍ଦାହକୁ ମେହେରଙ୍କ ଜୀବନ ଚରିତ ରୂପାୟନ ବୋଲି କହିବା ଲାଗି ସମର୍ଥକ ଉପାଦାନ

ତାଙ୍କ ଦାରିଦ୍ର୍ୟ ବିଗ୍ରହ ମଧ୍ୟରେ ନାହିଁ । ଆଉ ଅନ୍ୟ କଥା ଅଛି, ସମାଲୋଚକଙ୍କ ଲିପାରେ ଦରିଦ୍ର ଦରିଦ୍ର ଶୁଣି ଶୁଣି ସ୍ୱୟଂ ଭଗବାନବାବୁ ମଧ୍ୟ ଅସନ୍ତୁଷ୍ଟ ହୋଇ ମନ୍ତବ୍ୟ ଦେଇଛନ୍ତି ଯେ ତାଙ୍କ ପିତା ଓ ତାଙ୍କ ପରିବାର ମଧ୍ୟବିତ୍ତ ଶ୍ରେଣୀର ଥିଲେ । ଏହାହିଁ ସତ୍ୟ ଏବଂ ବରପାଲିର ସବୁ ବର୍ଷୀୟାନ୍ ବ୍ୟକ୍ତିଙ୍କ ଦ୍ୱାରା ସମର୍ଥିତ । ନ୍ୟାୟ୍ୟାନୁମୋଦିତ ରୀତିରେ ନିଜ ପରିଶ୍ରମ-ଲବ୍ଧ ଅର୍ଥ ଉପରେ ନିର୍ଭର କରି ଅନାବଶ୍ୟକ ଇଚ୍ଛାକାଙ୍କ୍ଷା ଠାରୁ ଦୂରରେ ରହି ଜୀବନ ଯୋଜନା କରିବା ଏ ଶିଷ୍ଟ ସଜ୍ଜନଙ୍କ ଜୀବନର ଯଥାଯଥ ପର୍ଯ୍ୟାଲୋଚନା ମନେ ହୁଏ । ତାଙ୍କ ସମସାମୟିକ ପ୍ରତିଷ୍ଠିତ କବି ରାଧାନାଥ, ମଧୁସୂଦନ, ନନ୍ଦ କିଶୋର ଓ ଫକୀର ମୋହନ ସମସ୍ତେ ଉଚ୍ଚପଦସ୍ଥ ଓ ମୋଟା ବେତନଭୋଗୀ ସରକାରୀ କର୍ମଚାରୀ, ସମସ୍ତେ ଉପାଧିପ୍ରାପ୍ତ ସମ୍ମାନିତ ଥିଲେ । ତାଙ୍କ ତୁଳନାରେ ଗଙ୍ଗାଧର ଅବଶ୍ୟ ଖୁବ୍ ଗରିବ ଥିଲେ । ସେମାନଙ୍କ ମଧ୍ୟରୁ ରାଧାନାଥ 'କୀଚକ ବଧ'ର ମୁଖବନ୍ଧରେ ଗଙ୍ଗାଧରଙ୍କ ଗରିବୀ ପ୍ରତି ଆକ୍ଷେପ କରି ଯେଉଁ ମନ୍ତବ୍ୟ ଦେଇଥିଲେ ତାହା ୧୯୦୩ର ଗଙ୍ଗାଧରଙ୍କ ଆର୍ଥିକ ମର୍ଯ୍ୟାଦା ଦୃଷ୍ଟିରୁ ନିଷ୍ଠୁର ଏକ ବ୍ୟଙ୍ଗ ମନ୍ତବ୍ୟ । ଗଙ୍ଗାଧରଙ୍କ ଦାରିଦ୍ର୍ୟର ସମାଲୋଚକ ରାଧାନାଥଙ୍କ ସେହି ମନ୍ତବ୍ୟକୁ ପୁଞ୍ଜି କରି ପରବର୍ତ୍ତୀ ଆଲୋଚକ ଗଙ୍ଗାଧରଙ୍କ ବୈଷୟିକ ଅବସ୍ଥାର ନିରପେକ୍ଷ ଆଲୋଚନା ନକରିବାରୁ ହିଁ ଏଭଳି ପରିସ୍ଥିତି ସୃଷ୍ଟି ହୋଇଛି । ଦ୍ୱିତୀୟତଃ ୧୯୫୦ ପରବର୍ତ୍ତୀ ଗଙ୍ଗାଧରଙ୍କ ସମାଲୋଚକମାନେ କଲେଜରେ ଅଧ୍ୟାପକ ଭାବେ ଯେତିକି ଟଙ୍କା ପହିଲ ତାରିଖରେ ଗଣନ୍ତି ଗଙ୍ଗାଧରଙ୍କ ପନ୍ଦର ଟଙ୍କା ସହିତ ତାହାର ତୁଳନାରେ ସେମାନଙ୍କ ଆଖିରେ ଗଙ୍ଗାଧର ଦରିଦ୍ର ବୁଭୁକ୍ଷୁ ହୋଇଯିବା ଆଦୌ ବିସ୍ମୟ-କର ନୁହେଁ; ଯଦିଓ ଏହା ସତ୍ୟ ଯେ ସେକାଳର ପନ୍ଦର ଟଙ୍କାର କ୍ରୟ ଶକ୍ତି ଯଥେଷ୍ଟ ବେଶୀ । ଶେଷ କଥା, ଗଙ୍ଗାଧର ନିମ୍ନ ମଧ୍ୟବିତ୍ତ ଗୃହସ୍ଥ ହୋଇଥିଲେ ହେଁ ଆପଣାର ଏହି ଅଲ୍ପତା ତାଙ୍କ ବ୍ୟକ୍ତିତ୍ୱକୁ କେତେବେଳେ କଳୁଷିତ ନ କରିବା ଫଳରେ ଉଦାର ଭାବନାର ସମୁଚ୍ଚ ସ୍ତରରେ ଥିଲା ତାଙ୍କ ଜୀବନ । କହିବା ବାହୁଲ୍ୟ, ସାହିତ୍ୟରେ ଆଦର୍ଶର ଯେଉଁ ମହତ୍ତ୍ୱ ସେ ଫୁଟାଇ ପାରିଛନ୍ତି ତାହା ମୂଳରେ ଯେଉଁ ମାନବିକବୋଧ ରହିଛି ତାହା ତାଙ୍କ ଦୈନ୍ୟମୟ ଜୀବନର ସଂକୀର୍ଣ୍ଣ ହିସାବ ଉପରେ ପର୍ଯ୍ୟବସିତ ନୁହେଁ, ବରଂ ଏକ ସନ୍ତୋଷାମୃତତୃପ୍ତ ଶାନ୍ତ ଆତ୍ମାର ଉଚ୍ଚାଭିମୁଖୀ ବର୍ଷଣ ମଧ୍ୟରେ ତାହାର ଉନ୍ମେଷ ଘଟିଥିଲା । ତାଙ୍କ କାବ୍ୟ ତାଙ୍କ ଦୁଃଖମୟ ଜୀବନର ରୂପାୟନ ହେବା ପରିବର୍ତ୍ତେ ତାହାର ସନ୍ଦେଶ ଥିଲା ବିସ୍ମରଣଯୋଗ୍ୟ ଦୁଃଖର ଦମନ ମଧ୍ୟରେ ମାନବପ୍ରାଣରେ ଉନ୍ନତ ଆଦର୍ଶମୟ ତ୍ୟାଗପରାୟଣ ଜୀବନର ପ୍ରତିଷ୍ଠା । ଏହାହିଁ ଭାରତୀୟ ସଂସ୍କୃତିର ଏକ ମୁଖ୍ୟ ସିଦ୍ଧାନ୍ତ ।

## ଗଙ୍ଗାଧର ଜୀବନ ଓ ଉତ୍କଳଭାରତୀ :

ଗଙ୍ଗାଧରଙ୍କ ସାଂସାରିକ ଜୀବନ ଅପେକ୍ଷା ଅଧିକ ଘଟଣାବହୁଳ ଥିଲା ତାଙ୍କ ସାହିତ୍ୟିକ ଜୀବନ । ତାଙ୍କ କବି-ଜୀବନର ଆଦ୍ୟ କାଳରେ ମଧ୍ୟପ୍ରଦେଶାନ୍ତର୍ଗତ ସମ୍ବଲପୁର ଜିଲ୍ଲାରେ ଓଡ଼ିଆ ଭାଷା ସାହିତ୍ୟର ଅନୁଶୀଳନ ଅଥବା ପ୍ରଚାର ପାଇଁ ଶାସକୀୟ ଅଥବା ସାମାଜିକ ସ୍ତରରେ ବିଶେଷ ପ୍ରୋତ୍ସାହନ ବ୍ୟବସ୍ଥା ନ ଥିଲା । ପ୍ରାଥମିକ ଓ ମଧ୍ୟବିଦ୍ୟାଳୟ ଗୁଡ଼ିକରେ ପ୍ରଚଳିତ ପାଠ୍ୟ ନିର୍ଘଣ୍ଟ ସବୁ ଓଡ଼ିଆରେ ନବ୍ୟଧାରାରେ ବ୍ୟୁତ୍ପତ୍ତି ଲାଭର ଅନୁକୂଳ ନ ଥିଲା । ଏହି ପରିସ୍ଥିତିରେ ସ୍ୱଳ୍ପ ଶିକ୍ଷିତ ଓ ଅଖ୍ୟାତନାମା ଗଙ୍ଗାଧରଙ୍କ 'ଇନ୍ଦୁମତୀ' ରଚନା ଉତ୍କଳ ପ୍ରଭାରେ ପ୍ରକାଶ ପାଇଁ ମନୋନୀତ ହେବା ତଥା ସେହି ରଚନା ନିମିତ୍ତ ନଗଦ ପଚିଶ ଟଙ୍କାର 'ପ୍ରଭା' ସାହିତ୍ୟିକ ପୁରସ୍କାର ଲାଭ ଏକ ଉଲ୍ଲେଖନୀୟ ଘଟଣା । ଏହାର ଏକ ଉତ୍ସାହପ୍ରଦ ଫଳ ହେଲା ଯେ, ଗଙ୍ଗାଧରଙ୍କ ଲେଖନୀର ଶକ୍ତି ଅନାୟାସରେ ପୂର୍ବାଞ୍ଚଳୀୟ ଓଡ଼ିଆ ଭାଷା ସାହିତ୍ୟିକମାନଙ୍କର ଦୃଷ୍ଟି ଆକର୍ଷଣ କଲା । ବିନା ପ୍ରଚାର ଉଦ୍ୟମରେ ଏକ ଅତ୍ୟନ୍ତ ପ୍ରକୃତିକ ଧାରାରେ କବିଯଶଃ-କ୍ଷେତ୍ରରେ ତାଙ୍କର ପ୍ରଥମ ବିଜୟ ତାଙ୍କ ପକ୍ଷରେ ଅବଶ୍ୟ ଉତ୍ସାହର କାରଣ ହୋଇଥିବ ଏବଂ ନିଜ ଲେଖନୀର ଶକ୍ତି ଉପରେ ତାଙ୍କର ବିଶ୍ୱାସ ପ୍ରତିଷ୍ଠିତ ହୋଇଥିବ । ସୌଭାଗ୍ୟକ୍ରମେ ଏହି ଘଟଣାରୁ ସେ ପରିଚିତ ହେଲେ ସେ କାଳର କବିଗୁରୁ ରାଧାନାଥଙ୍କ ସହିତ । ପଶ୍ଚାତ୍‌ରେ ରାଜା ପୁଣ୍ଡରୀକ ଦେବ ଏବଂ ହିତୈଷିଣୀ ସଂପାଦକ ନୀଳମଣି ବିଦ୍ୟାରତ୍ନଙ୍କ ସହ ତାଙ୍କ ପରିଚୟର ହେତୁ ମଧ୍ୟ ଏହି ପ୍ରାରମ୍ଭିକ କୀର୍ତ୍ତି । ଏମାନଙ୍କ ସହିତ ଏବଂ ପରେ ପରେ ସେହି ସମୟର ସବୁ ସାହିତ୍ୟିକଙ୍କ ସହିତ ପତ୍ର ବ୍ୟବହାର ମାଧ୍ୟମରେ ଏକ ପୂର୍ବ-ପଶ୍ଚିମ-ସାହିତ୍ୟ-ସଂହତି ରକ୍ଷାର ଅପ୍ରତ୍ୟକ୍ଷ ଭାବେ ସେ ଓଡ଼ିଆ ସାହିତ୍ୟର ସେବା କରିଯାଇଛନ୍ତି । 'ଭାରତୀ ବେଦନ' ଉତ୍କଳ ଭାରତୀଙ୍କ ଉକ୍ତି ପ୍ରକାଶିତ ବହୁ କ୍ଷୁଦ୍ର କବିତାରେ ସେକାଳ ଓଡ଼ିଆ ସାହିତ୍ୟର ସମସ୍ୟା ତଥା ଦୁରବସ୍ଥା ଦର୍ଶାଇ ସମ୍ପୃକ୍ତ ଏ ଦିଗରେ ଉଦ୍‌ବୁଦ୍ଧ କରିବାରେ ତାଙ୍କର ନିରନ୍ତର ଉଦ୍ୟମ ବୁଝିହେଲା । ଏହି ପତ୍ର ଗୁଡ଼ିକ ମଧ୍ୟରୁ ଯାହା ସଂଗୃହୀତ ଓ ଓ ପ୍ରକାଶିତ ହୋଇଛି ତହିଁରୁ ସେକାଳର ଏହି ସାହିତ୍ୟସେବୀମାନେ ଏ ଦିଗରେ ଯେଉଁ ସବୁ ଚିନ୍ତା ଚେଷ୍ଟା କରୁଥିଲେ ତାହାର ବହୁ ସୂଚନା ମିଳେ । ବିଶେଷତଃ, ଗଙ୍ଗାଧରଙ୍କ ପ୍ରତି ଯେଉଁ ସମ୍ମାନ ଏବଂ ବନ୍ଧୁତା ପ୍ରଦର୍ଶିତ ହୋଇଛି ତାହା ଗଙ୍ଗାଧରଙ୍କ ଅମାୟିକ ତଥା ମିତ-ପୂତ ସମ୍ଭ୍ରମବୋଧର ଏକାନ୍ତ ଅନୁରୂପ ହୋଇଛି । ଶେଷରେ ୧୮୯୫ ରେ ଯେତେବେଳେ ମଧ୍ୟପ୍ରଦେଶ ସରକାର ସମ୍ବଲପୁରରେ ହିନ୍ଦୀଭାଷୀ ପ୍ରଶାସକଙ୍କ ସୁବିଧା ନିମିତ୍ତ କଚେରି ଅଫିସରେ ହିନ୍ଦୀ ଭାଷା ପ୍ରଚଳନ ପାଇଁ ଆଦେଶ ଦେଲେ ଏବଂ ସମ୍ବଲପୁରର ଶିକ୍ଷିତ ସାଧାରଣଙ୍କ

ମଧ୍ୟରେ ଭାଷା ଆନ୍ଦୋଳନ ଦେଖାଦେଲା, ସେତେବେଳେ କର୍ମନିଷ୍ଠ ଗଙ୍ଗାଧର ପ୍ରସ୍ତାବ ଦେଇଥିଲେ ଯେ ଓଡ଼ିଆ ଭାଷା ପ୍ରବର୍ତ୍ତନ କରି ଓଡ଼ିଆ ଜାଣିଥିବା ପ୍ରଶାସନିକ ଅଫିସରଙ୍କୁ ସମ୍ବଲପୁରରେ ନିଯୁକ୍ତ ଦେବାଦ୍ୱାରା ଏହାର ବାସ୍ତବ ସମାଧାନ ହେବ । ଶେଷରେ ସରକାର ଏ ପ୍ରସ୍ତାବର ସାରବତ୍ତା ହୃଦୟଙ୍ଗମ କରି ତଥା ଆନ୍ଦୋଳନର ଚାପରେ ଆଦେଶ ବଦଳାଇବା ଫଳରେ ଏ ଜିଲ୍ଲାରେ ଓଡ଼ିଆ ଭାଷା ହେଲା ସରକାରୀ ଭାଷା । ପୂର୍ବାଞ୍ଚଳରେ ବଙ୍ଗଳା ଭାଷାର ଗ୍ରାସରୁ ଓଡ଼ିଆ ଭାଷା ରକ୍ଷା ପାଇବାର ପ୍ରାୟ ୩୦ ବର୍ଷ ପରେ ସମ୍ବଲପୁରରେ ତାହାର ପ୍ରାଧାନ୍ୟ ଏହିପରି ପରିସ୍ଥିତ ହେଲା । ଶେଷରେ ୧୯୦୫ରେ ସମ୍ବଲପୁରର ଓଡ଼ିଶାରେ ମିଶ୍ରଣ ଦ୍ୱାରା ଏହି ସମସ୍ୟାର ପ୍ରକୃତ ସମାଧାନ ହେଲା । ଓଡ଼ିଆ ସାହିତ୍ୟ ପରିସରରେ ସମ୍ବଲପୁର ପ୍ରତିଭାର ପ୍ରତିଷ୍ଠା, ସମ୍ବଲପୁରରେ ଓଡ଼ିଆ ଭାଷା ସାହିତ୍ୟର ଅନୁଶୀଳନ ନିମିତ୍ତ ବାତାବରଣ ସୃଷ୍ଟି ତଥା ସମ୍ବଲପୁରରେ ବଳୋପମୁଖୀ ଓଡ଼ିଆ ଭାଷାର ଜୀବନରକ୍ଷା କରିବା ଯୋଗୁଁ ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧର ସେହି ସଙ୍କଟକାଳରେ ଗଙ୍ଗାଧର "ଓଡ଼ିଆ ଭାଷା ସାହିତ୍ୟର ପଶ୍ଚିମ ସୀମାନ୍ତ ପ୍ରହରୀ" ଥିଲେ ବୋଲି କହିବା ଅବଶ୍ୟ ଯଥାର୍ଥ ।

ଗଙ୍ଗାଧରଙ୍କ ସାହିତ୍ୟିକ ବୈଶିଷ୍ଟ୍ୟ ତାଙ୍କ ସମସାମୟିକ କାଳରେ ସ୍ୱୀକୃତ ହୋଇଥିଲା । ଓଡ଼ିଆ ପାଠକର ଭୂରି ଅନୁଯାୟୀ ରଚିତ ହୋଇଥିବାରୁ ତାଙ୍କ କାବ୍ୟ କବିତା ସବୁ କ୍ଷୁଦ୍ର ବୃହତ୍ ନିର୍ବିଶେଷରେ ମୁଦ୍ରିତ, ପ୍ରକାଶିତ ଓ ପ୍ରଚାରିତ ହୋଇଥିଲା । ପ୍ରଭା, ଉତ୍କଳସାହିତ୍ୟ, ହିତୈଷିଣୀ, ମୁକୁର ପ୍ରଭୃତି ସେ କାଳର ପତ୍ରପତ୍ରିକାରେ ତାଙ୍କର ରଚନାର ସମାଦର ବେଶ ଥିଲା । ଓଡ଼ିଶାର କୃତବିଦ୍ୟ ପଦସ୍ଥ ଲୋକେ ଆଗେଇ ଆସି ସ୍ୱତଃପ୍ରବୃତ୍ତ ହୋଇ ତାଙ୍କ ବହିର ମୁଦ୍ରଣ ବ୍ୟୟ ବହନ କରୁଥିଲେ । ସେତେବେଳେ ଏ ପୁସ୍ତିକା ଗୁଡ଼ିକର ମୂଲ୍ୟ ଛଅ ପଇସାରୁ ଛଅ ଅଣା ମଧ୍ୟ ଥିଲା । ତେଣୁ ତାଙ୍କର ବହିଗୁଡ଼ିକ ବିକ୍ରି ହେଲେ ମଧ୍ୟ ତହିଁରୁ ବିଶେଷ ଅର୍ଥାଗମର ସମ୍ଭାବନା ନ ଥିଲା । ତଥାପି ବହିର ବିକ୍ରୟଲବ୍ଧ ସ୍ୱଳ୍ପଧନ ସେ ପ୍ରାୟ ପାଇଥିଲେ । ଉତ୍କଳସମ୍ମିଳନୀ ଓ ଅନ୍ୟାନ୍ୟ ମଞ୍ଚରେ ତାଙ୍କୁ ସମ୍ମାନିତ ଆସନ ପ୍ରଦତ୍ତ ହେଉଥିଲା । ଗଙ୍ଗାଧର ଏହାପ୍ରତି ପରାଙ୍ମୁଖ ନ ହେଲେ ବି ସେହି ଲାଳସାରେ କାହାର ଅନୁଗ୍ରହ ପ୍ରାର୍ଥୀ ହୋଇ ନାହାନ୍ତି ।

**ଗଙ୍ଗାଧରଙ୍କ ସାଧାରଣ ଚରିତ୍ର :**

ମୂଳତଃ ଗଙ୍ଗାଧରଙ୍କ ଆଦ୍ୟ-ଜୀବନରେ ତାଙ୍କୁ ପୈତୃକ ସହାୟତା ମିଳି ନ ଥିବାରୁ ଏବଂ ତାଙ୍କ ଜୀବନର ଗଠନ ପ୍ରକ୍ରିୟାରେ ଆତ୍ମନିଷ୍ଠ ଉଦ୍ୟମ ତାଙ୍କର

ଏକମାତ୍ର ସହାୟକ ତଥା ପ୍ରେରଣାଭୂମି ହୋଇଥିବାରୁ ସେହି ଧାତୁରେ ଗଢା ଏ ମଣିଷଟି ସମ୍ପୂର୍ଣ୍ଣ ଆତ୍ମନିର୍ଭରଶୀଳ ମଣିଷ ଭାବେ ଜୀବନ ବିତାଇଗଲେ । କୌଣସି କଥାରେ କାହାରି ହେଲେ ଦ୍ୱାରସ୍ଥ ନ ହେବା ଥିଲା ତାଙ୍କର ସ୍ୱାଭିମାନୀ ପ୍ରକୃତିର ବୈଶିଷ୍ଟ୍ୟ । ଅପରର ସ୍ୱେଚ୍ଛାକୃତ ଅଯାଚିତ ଦାନ ବିନୀତଭାବେ ଏଡ଼ାଇ ଯିବାର ଦୃଷ୍ଟାନ୍ତ ମଧ୍ୟ ଅଛି ତାଙ୍କ ଜୀବନରେ । ଆପଣାର କ୍ଷୁଦ୍ରତାବୋଧ ତାଙ୍କୁ କେବେ ହୀନମନ୍ୟ କରିନାହିଁ । କିନ୍ତୁ ସନ୍ଧାନରେ ନୀତିମୟ ଅଭ୍ୟାସ ଏବଂ ଈଶ୍ୱର ବିଶ୍ୱାସରୁ ତାଙ୍କୁ ମିଳିଥିଲା ଯେଉଁ ଅକୁଣ୍ଠ ବିନୟ, ତା ସହିତ ତାଙ୍କ ସ୍ୱାଭିମାନବୋଧ ମିଶି ତାଙ୍କୁ ଏକ ଅମାର୍ଜିତ ସୌଜନ୍ୟ ଦେଇଥିଲା । ଧୀର, ଶାନ୍ତଶିଷ୍ଟ ଏ ସଜ୍ଜନ କାହାରି ଠାରୁ କେବେ କିଛି ଦାବି କରି ନାହାନ୍ତି । ସାଧ୍ୟ ମତେ ଅପରକୁ ଅଳ୍ପାଧିକ ସାହାଯ୍ୟ କରି ଏକ ଚିର ହାସ୍ୟମୟ ଅନାବିଲ ଜୀବନ କଟାଇ ଯାଇଛନ୍ତି । ତେଣୁ ଉତ୍ତର ଜୀବନର ଗୀତି କବିତା ମଧ୍ୟରେ ତାଙ୍କ 'ଭକ୍ତି' 'ଅମୃତମୟ' ଏବଂ 'ମଧୁମୟ' କବିତାର ସ୍ୱାଦ-ସ୍ୱାଚ୍ଛନ୍ଦ୍ୟ ପାଠକକୁ ଏତେ ଗଭୀରଭାବେ ସ୍ପର୍ଶ କରେ । ଗଙ୍ଗାଧରଙ୍କ ଚରିତ୍ରର ଏହି ମହତ୍ତ୍ୱପୂର୍ଣ୍ଣ ବିଭବର ପ୍ରମାଣରୂପେ ତାଙ୍କ ଜୀବନର ମହତ୍ତ୍ୱପୂର୍ଣ୍ଣ ବହୁ କ୍ଷୁଦ୍ର ଘଟଣା ବରପାଲିର କେତେକ ଅଶୀତିପର ବୟସର ବ୍ୟକ୍ତିଙ୍କ ଠାରୁ ଶୁଣିବାକୁ ମିଳେ । ଭଗବାନ ମେହେରଙ୍କ "ପିତୃପ୍ରସଙ୍ଗ" ପୁସ୍ତକର "ନାନାକଥା" ଅଧ୍ୟାୟରେ ( ପୃ ୧୩୧ ରୁ ପୃ : ୧୪୯ ) ଏହିଭଳି ବହୁ ଦୃଷ୍ଟାନ୍ତର ଉଲ୍ଲେଖ ମଧ୍ୟ ରହିଛି ।

୧୯୨୪, ଏପ୍ରିଲ ୪ ତାରିଖ ଦିନ ଗଙ୍ଗାଧର ଲୀନ ହେଲେ ଅମୃତ ସାଗରରେ । ସେଦିନ ଚୈତ୍ର ଅମାବାସ୍ୟା । ୧୮୬୨ ଶ୍ରାବଣ ପୂର୍ଣ୍ଣିମାରେ ଯେଉଁ ଜ୍ୟୋତିର ଉଦ୍ଭବ ହୋଇଥିଲା ତାହା ଅସ୍ତମିତ ହେଲା ଅମାବାସ୍ୟାର ଗାଢ଼ ତମିସ୍ରା ମଧ୍ୟରେ । ରାଧାନାଥ ଯୁଗର ସାହିତ୍ୟରଥୀ ଚତୁଷ୍ଟୟ ମଧ୍ୟରେ ରାଧାନାଥଙ୍କ ଉତ୍ତର ଦାୟାଦ ରୂପେ ଥିଲେ ସେ । ରାଧ୍ ମଧ୍ ଫକୀରଙ୍କ ପରେ ଗଙ୍ଗାଧରଙ୍କ ମହାପ୍ରସ୍ଥାଣ ହେବା, ତା ସହିତ ଆଧୁନିକ ପ୍ରେମକାବ୍ୟର ଅଧ୍ୟାୟ ଉପରେ ଏକ ଯବନିକା କ୍ରମେ ଘନେଇ ଆସିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।



## ଦ୍ୱିତୀୟ ପରିଚ୍ଛେଦ : ପ୍ରୟୋଗ ପର୍ବ

# ଗଙ୍ଗାଧରଙ୍କ ସାହିତ୍ୟ ସାଧନାର ଉନ୍ମେଷ

**ଆମ ସାହିତ୍ୟ ପରମ୍ପରା :**

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ଆଦର୍ଶ ଥିଲା ହଜାର ହଜାର ବର୍ଷର ସଂସ୍କୃତ ସାହିତ୍ୟର ପରମ୍ପରା ମଧ୍ୟରେ ସଂବର୍ଦ୍ଧିତ ଆଲଙ୍କାରିକ ଆଦର୍ଶ । ଏହି ଭିତ୍ତିରେ ରଚିତ କାବ୍ୟ କବିତା ଗଦ୍ୟପଦ୍ୟାଦି ସକଳ ସାହିତ୍ୟିକ ରଚନାର ଅବବୋଧ ତଥା ରସ-କର୍ଷଣ ନିମିତ୍ତ ଶିଷ୍ଟଜନଙ୍କ ପକ୍ଷରେ ଏକ ଅନୁକୂଳ ଶିକ୍ଷା ପଦ୍ଧତିରେ ତାଲିମ ଲାଭ କରିବା ଆବଶ୍ୟକ ଥିଲା । ଅନ୍ୟ କଥାରେ ସମାଜର ସାଧାରଣ ଶିକ୍ଷାପଦ୍ଧତି ତଥା ପାଠ୍ୟ ନିର୍ଘଣ୍ଟ ପ୍ରଚଳିତ ସାହିତ୍ୟିକବୋଧ ଉଦ୍ଦେଶ୍ୟରେ ନିୟନ୍ତ୍ରିତ ହେଉଥିଲା । ପକ୍ଷାନ୍ତରରେ ଏହି ଶିକ୍ଷାର ଫଳ ସ୍ୱରୂପ ପରମ୍ପରା ସହିତ ସଂପୃକ୍ତ ଶିଷ୍ଟ ଚିତ୍ତର ସୃଜନ-ପ୍ରତିଭାର ଉନ୍ମେଷ ଘଟିବା ସଙ୍ଗେ ସଙ୍ଗେ ଅଭିନବ ସାହିତ୍ୟ ସୃଷ୍ଟି ସମ୍ଭବ ହେଉଥିଲା । ନବୀନ-ପ୍ରତିଭାର ସ୍ୱକୀୟ ବୈଶିଷ୍ଟ୍ୟ ଥିଲେ କାବ୍ୟ-କୌଶଳ କ୍ଷେତ୍ରରେ ଅଭିନବ ଧାରା ପ୍ରବର୍ତ୍ତିତ ହେଉଥିଲା । କାବ୍ୟାଦର୍ଶ ଓ ସାହିତ୍ୟିକର ଏହି ସମ୍ବନ୍ଧ ମଧ୍ୟରେ ଏକ ତୃତୀୟ ଶକ୍ତି ହେଉଛି ପାଠକ । ଗ୍ରାହକ, ପାଠକ ଅଥବା ସମାଲୋଚକର ରୁଚି ସ୍ରଷ୍ଟା-କବିର ସୃଜନ-ଧାରାର ଦିଗ୍‌ ନିର୍ଦ୍ଦେଶ କରିବା ମଧ୍ୟ ଏକ ସ୍ୱତଃସିଦ୍ଧ ବ୍ୟାପାର । କାରଣ କବି ଲାଗି କବିଯଶଃପ୍ରାର୍ଥୀ ହେବା ଏକ ସ୍ୱାଭାବିକ ଆକାଂକ୍ଷା । ତିନୋଟି ଉପାଦାନ—ପାରମ୍ପରିକ ସାହିତ୍ୟାଦର୍ଶ, ପାଠକ-ରୁଚି ଏବଂ ଅଭିନବ ସାହିତ୍ୟ ସୃଷ୍ଟି—ଏମାନଙ୍କର ସଂଯୋଗ-ସୂତ୍ର ରୂପେ ଥାଏ ଶିକ୍ଷାମାର୍ଗ ଓ ଶିକ୍ଷାବସ୍ତୁ, ଯାହା ଯୋଗୁଁ ପରମ୍ପରାର ଚଳନ ଭିତ୍ତିରେ ଗ୍ରାହକର ରୁଚି ନିରୂପିତ ହୋଇଥାଏ ଏବଂ ଅବଶେଷରେ ପ୍ରତିଭାଧର ଆଗାମୀ-ସ୍ରଷ୍ଟାର ପ୍ରକାଶ ଧାରାକୁ ଇଙ୍ଗିତ ଦ୍ୱାରା ଉଜ୍ଜୀବିତ କରେ ।

ସମସ୍ତ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏ ସତ୍ୟର କାର୍ଯ୍ୟକାରିତା ଦେଖିବାକୁ ମିଳେ । ହୁଏତ ସବୁ ଦେଶର ସବୁ ସାହିତ୍ୟ ପ୍ରତି ଏହାର ଉପଯୋଗିତା ମଧ୍ୟ ରହିଛି ।

## ନୂତନ ପ୍ରସବ ଓ ନବଜୁଆର :

ସାହିତ୍ୟର ଏହି ପ୍ରବହମାନ ଧାରା କିନ୍ତୁ ବେଳେ ବେଳେ ଏକ ଅପ୍ରତ୍ୟାଶିତ ବାତ୍ୟାବାତ୍ୟା ଘଟଣା ଦ୍ୱାରା ଆନ୍ଦୋଳିତ ହୋଇଉଠେ । ଏ ଦେଶକୁ ଇଂରେଜ-ମାନଙ୍କ ଆଗମନ ସହିତ ଆସିଥିଲା ତାଙ୍କ ସଭ୍ୟତା, ସଂସ୍କୃତି ଓ ଜୀବନଧାରା ଏବଂ ତାହାର ଆଧାରରେ ସମୃଦ୍ଧିତ ଏକ ଅଭିନବ ସାହିତ୍ୟାଦର୍ଶର ଅନୁସରଣରେ ରଚିତ କାବ୍ୟନାଟକାଦି ବିବିଧ ରଚନା । ଇଂରେଜ ଶିକ୍ଷାର ପ୍ରସାର ଏବଂ ଲୋକପ୍ରିୟତା ସଙ୍ଗେ ସଙ୍ଗେ ଏ ଶାସକୀୟ ଭାଷା ଓ ସାହିତ୍ୟ ଏ ପରାଧୀନ ଦେଶରେ ଯେଉଁ ଆକର୍ଷଣୀୟ ପ୍ରଭାବ ବିସ୍ତାର କଲା ସେହି ପ୍ରଭାବ ଅଧିକ ସାନ୍ଦ୍ର ଭାବେ ଭାରତୀୟ ତଥା ଉତ୍କଳୀୟ ଜୀବନକୁ ଆବିଷ୍ଟ କଲା ସେ ଦେଶର ଭିନ୍ନ ସ୍ୱାଦର ସାହିତ୍ୟାଦର୍ଶ ମାଧ୍ୟମରେ । ଇଂରେଜ ଶିକ୍ଷିତ ଓଡ଼ିଆ ଶିକ୍ଷିତଜନ ତଥା ପାଠକ ସମସ୍ତେ ଖୋଜିଲେ ଏକ ନୂଆ ସାହିତ୍ୟ । ଅମ ମଧ୍ୟଯୁଗୀୟ ସାହିତ୍ୟର ଆଦର୍ଶ ତଥା ସୃଷ୍ଟିର ମନୋହାରିତା ସତ୍ତ୍ୱେ ଶିକ୍ଷିତ ସାଧାରଣ ରୁଚି ମଧ୍ୟରେ ଥିଲା ଏକ ଅତୃପ୍ତି । ଶିକ୍ଷିତଜନ ଚିତ୍ତର ଏହି ଅତୃପ୍ତି ହିଁ ଯଥାର୍ଥରେ ଏକ ସାହିତ୍ୟିକ ପରିବର୍ତ୍ତନର ଅଙ୍କୁରୋଦ୍‌ଗମ ନିମିତ୍ତ ଅନୁକୂଳ ଅବସ୍ଥା ଯୋଗାଇଥିଲା ।

## ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ଆରମ୍ଭ :

ଓଡ଼ିଶାରେ ଇଂରେଜ ଶିକ୍ଷାର ପ୍ରସାର ପ୍ରଥମ ଅବସ୍ଥାରେ ମନ୍ଥର ଗତିରେ ଚାଲିଥିଲା । ସେତେବେଳେ ଆନୁଷ୍ଠାନିକ ଶିକ୍ଷା ଓ ପାଠ୍ୟକ୍ରମର ଯୁଗୋପଯୋଗୀ ପରିବର୍ତ୍ତନ ମଧ୍ୟରେ ନବ୍ୟଶିକ୍ଷିତଙ୍କ ଚିତ୍ତର ପ୍ରସ୍ତୁତି-ପର୍ବ ଚାଲିଥିବା କହିଲେ ଯଥାର୍ଥ ହେବ । ଏ କ୍ଷେତ୍ରରେ ଆମର ପାର୍ଶ୍ୱବର୍ତ୍ତୀ ବଙ୍ଗପ୍ରଦେଶର ସାହିତ୍ୟିକ ପ୍ରଗତି ହୋଇଥିଲା ଆମର ପୁରୋଗାମୀ ଆଦର୍ଶ । ରାଜନୈତିକ ଅଗ୍ରସରତା ସହିତ ଭାରତର ଶାସନ-କେନ୍ଦ୍ର ହେବା ଯୋଗୁଁ ବଙ୍ଗ ପ୍ରଦେଶର ପଦସ୍ଥ ବ୍ୟକ୍ତି, ଧନୀ ଜମିଦାର ତଥା ଶିକ୍ଷିତ ଲୋକେ ଓଡ଼ିଶା ଉପରେ ସବୁ କ୍ଷେତ୍ରରେ ଯେଉଁ ପ୍ରଭାବ ବିସ୍ତାର କରିବାର ସୁବିଧା ପାଇଥିଲେ ତାହାର ସୁଫଳ ରୂପେ ବିଳମ୍ବରେ ହେଲେ ମଧ୍ୟ ଓଡ଼ିଶାରେ ଆରମ୍ଭ ହେଲା ନୂତନ ଶିକ୍ଷାପଦ୍ଧତିର ଅନୁସାରୀ ଯୋଜନା । ଏ ଅଭିନବ ଶିକ୍ଷା-ସମ୍ବର୍ଦ୍ଧିତ ଓଡ଼ିଶା ସମାଜର ସ୍ଥୂଳ ମନରେ ଦେଖା ଦେଇଥିଲା ଯେଉଁ ପ୍ରସ୍ତୁତି ତଥା ଅତୃପ୍ତି ତାହା ହିଁ ୧୮୬୦ ପରବର୍ତ୍ତୀ କାଳରେ ଇଂରାଜୀ ଶିକ୍ଷା ପ୍ରସାର ସଙ୍ଗେ ସଙ୍ଗେ ଆଣି ଦେଇଥିଲା ଅଭିନବ ସୃଷ୍ଟିର ଇଙ୍ଗିତ । ଉତ୍କଳ ଦର୍ପଣ ପତ୍ରିକାର ରଚନା ମାଧ୍ୟମରେ ୧୮୭୩ ଠାରୁ ଆରମ୍ଭ ହେଲା ଏହି ନବ୍ୟ-ସାହିତ୍ୟ ରଚନାର ପର୍ବ । ଗଦ୍ୟ, ପଦ୍ୟ, ନାଟକ-ସାହିତ୍ୟର ସବୁ ବିଭାଗରେ ଯେଉଁ ନୂତନ ପରୀକ୍ଷା ଆରମ୍ଭ ହେଲା ଊନବିଂଶ ଶତକର ଶେଷ ପାଦରେ, ତାହା ହିଁ

ଓଡ଼ିଶାରେ ଆଧୁନିକ ସାହିତ୍ୟର ଉନ୍ମେଷ ଏବଂ ଆଧୁନିକ ଯୁଗର ଶୁଭାରମ୍ଭ । ଏ ସମୟରେ କାବ୍ୟର ରଚନାରେ ନୂତନ ଆଦର୍ଶ, ବିଷୟବସ୍ତୁ, ପରିବେଷଣଭଙ୍ଗୀ, କାବ୍ୟ-କୌଶଳ ତଥା ଅଳଙ୍କାର ପ୍ରୟୋଗର ନୂତନ ମାର୍ଗର ସନ୍ଧାନ ଦେଇ ଶିଳ୍ପୀ ରାଧାନାଥ ଯେଉଁ ନୂତନ କାବ୍ୟଧାରା ପ୍ରବର୍ତ୍ତନ କଲେ ତାହାହିଁ ତାଙ୍କୁ ଏ ଆଧୁନିକ ଯୁଗର ପ୍ରବର୍ତ୍ତକର ଗୌରବ ଦେଇଥିଲା ।

## ସମ୍ବଲପୁର ଜିଲ୍ଲାର ଅବସ୍ଥା :

ଗଙ୍ଗାଧର ରାଧାନାଥ ଯୁଗର ଅନ୍ୟତମ ପ୍ରତିନିଧି ସ୍ଥାନୀୟ କବି । ତାଙ୍କ ସଂକ୍ଷିପ୍ତ ଜୀବନ କଥା ପ୍ରସଙ୍ଗରେ ସୂଚିତ ଦିଆଯାଇଛି ଯେ ତାଙ୍କ ଜନ୍ମ-ଜିଲ୍ଲା ସମ୍ବଲପୁର ରାଜନୈତିକ ଓଡ଼ିଶାରେ ଅନ୍ତର୍ଭୁକ୍ତ ନହୋଇ ରହିଥିଲା ମଧ୍ୟପ୍ରଦେଶରେ । ଫଳରେ ଏ ଜିଲ୍ଲାରେ ଶିକ୍ଷାଦର୍ଶ, ପଦ୍ଧତି ଓ ପାଠ୍ୟକ୍ରମ ସବୁ ନିୟନ୍ତ୍ରଣ କରୁଥିଲେ ମଧ୍ୟପ୍ରଦେଶ ସରକାର । ଇଂରେଜୀ ଆଦର୍ଶରେ ତଥା ବଙ୍ଗୀୟ ପ୍ରଶାସକଙ୍କ ନେତୃତ୍ୱରେ ଓଡ଼ିଶାରେ ଆଧୁନିକ ବିକାଶାନୁକୂଳ ଯେଉଁସବୁ ନୂତନ ବିଧିବ୍ୟବସ୍ଥା ପ୍ରବର୍ତ୍ତିତ ହେଉଥିଲା ସମ୍ବଲପୁରରେ ତାହା ସମ୍ଭବ ନଥିଲା । ଫଳତଃ ସମ୍ବଲପୁର ଜିଲ୍ଲାର ଓଡ଼ିଆ ଶିକ୍ଷା ଚାଲିଥିଲା ଠିକ୍ ପୁରାତନ ଧାରାରେ । ଏହା ସହିତ ଏ ଅଞ୍ଚଳରେ ଅତ୍ୟଳ୍ପ କେତୋଟି ମାତ୍ର ସ୍କୁଲର ମାଧ୍ୟମରେ ଚାଲିଥିବା ଶିକ୍ଷା ପ୍ରସାର ମଧ୍ୟ ତୁଳନାତ୍ମକ ଭାବେ ପୂର୍ବାଞ୍ଚଳଠାରୁ ଅତୀବ ସୀମିତ ଓ ମନ୍ଥର ଥିଲା । ମୂଳତଃ, ନା ଥିଲା ପ୍ରଚାର, ନାଥିଲା ଆଧୁନିକ ବିକାଶୋପଯୋଗୀ ବ୍ୟବସ୍ଥା । ସମଗ୍ର ପରିବେଶରେ ଥିଲା ଏକ ଅଜ୍ଞତା ଓ ସୁଷୁପ୍ତିର ଗାଢ଼ ଆବେଶ । ଏହି ପରିସ୍ଥିତିରେ ଦରିଦ୍ର ପିତାର ସନ୍ତାନ ଗଙ୍ଗାଧର ଭୁଲିଆଙ୍କ ପକ୍ଷରେ ପ୍ରଚଳିତ କୁପ୍ରଥାରପ୍ରାପ୍ତ ସମାଜର ପ୍ରଭାବରେ ମାତ୍ର ଦଶ ବର୍ଷ ବୟସରେ ବିବାହ କରିବାର ଅବଶ୍ୟମ୍ଭାବୀ ଫଳ ତନ୍ତ୍ର-ଚର୍ଚ୍ଚା ଛଡ଼ା ଆଉ କ'ଣ ହୋଇପାରେ ? ତାଙ୍କର ଯେ ତଥାପି ଗ୍ରନ୍ଥ-ଚର୍ଚ୍ଚା ପ୍ରତି ମୋହ ଥିଲା ଏହା ସତେ ଯେପରି ଏକ ରୁଦ୍ଧକକ୍ଷ ବନ୍ଦୀ-ପ୍ରତିଭାର ଆତ୍ମ-ବିକାଶ ଲାଗି ଆକୁଳ ଉଦ୍ୟମ ବୋଲି କହିବା ହିଁ ସଙ୍ଗତ । ପରିବେଶ ଏବଂ ପାରିବାରିକ ଅବସ୍ଥା ସମ୍ବନ୍ଧ ଏକ ଉଗ୍ର ପ୍ରତିକୂଳ ପରିସ୍ଥିତି ବିରୋଧରେ ସଂଗ୍ରାମରତ ଏହି କିଶୋର-ତରୁଣ ଆନୁଷ୍ଠାନିକ ଶିକ୍ଷା କ୍ଷେତ୍ରରେ ବଞ୍ଚିତ ହୋଇ ମଧ୍ୟ ଅଣ-ଆନୁଷ୍ଠାନିକ ଶିକ୍ଷା ପ୍ରତି ଆକୃଷ୍ଟ ହୋଇ ଯେଉଁ ଗଭୀର ସାଧନା-ପ୍ରିୟତାର ଦୃଷ୍ଟାନ୍ତ ରଖିଯାଇଛନ୍ତି ତାହା ଯେପରି ରୋମାଞ୍ଚକର ସେହିପରି ପ୍ରେରଣା-ଦାୟକ ।

## ଗଙ୍ଗାଧରଙ୍କ ଆଦ୍ୟରଚନା 'ରସରତ୍ନାକର' :

ଏହାହିଁ ପ୍ରତିଭାର ଗତି, ଏକ ମହତ୍ତ୍ୱପୂର୍ଣ୍ଣ ଜୀବନର ଉନ୍ମେଷ ପାଇଁ ନିୟତି-ନିର୍ଦ୍ଦିଷ୍ଟ ଇଙ୍ଗିତ । କିନ୍ତୁ ଏହି ପ୍ରାଗ୍‌ଜନ୍ମଜନିତ କର୍ଷଣରୁ ଉଦ୍‌ଗତ ଅଙ୍କୁରରେ ନୂତନର ରସ ଅବା ଗନ୍ଧ କିପରି ଆଶା କରାଯିବ ? ଜୀବନର ଊଷର ଭୂମିରେ ଏକ ସ୍ଫୁଟୋନ୍ମୁଖ ପ୍ରତିଭା-ବୀଜ ସତେ ଯେପରି ଜୀବନର ଦୁର୍ବାର ଆହ୍ୱାନ ଯୋଗୁଁ ଏକ କ୍ଷୁଦ୍ର ଦୁର୍ବଳ ଓ ଆକର୍ଷଣବିହୀନ ଅଙ୍କୁରର ଆକାର ନେଇ ଯେ ଆତ୍ମପ୍ରକାଶ କଲା ତାହାହିଁ ବିଚିତ୍ର । ବାସ୍ତବରେ ଗଙ୍ଗାଧରଙ୍କ ସେହିଭଳି ମୌଳିକ ଓ ବିସ୍ମୟକର ପ୍ରତିଭା ନଥିଲେ "ରସରତ୍ନାକର"ର ଉଦ୍ଭବ ହୋଇ ନଥାନ୍ତା । ଆତ୍ମଚରିତରେ ଗଙ୍ଗାଧର କହିଛନ୍ତି, "ସ୍କୁଲ ଛାଡ଼ିଲାରୁ…… ……… । ପ୍ରଥମେ ଛୋଟ ଛୋଟ କେତେକ କବିତା ପୂର୍ବଧରଣରେ ଲେଖିଥିଲି । ତନ୍ମଧ୍ୟରେ 'ରସରତ୍ନାକର' ବଡ଼ ।" "ସ୍କୁଲ ଛାଡ଼ିଲାରୁ" ସେ କେତେକ ଛାନ୍ଦ ଗ୍ରନ୍ଥ ଘରେ ଘରେ ପଢ଼ିଥିଲେ । ଏହି ସମୟରେ ତାଙ୍କ ଲେଖନୀର ପ୍ରଥମ ଉନ୍ମେଷ "ପୂର୍ବଧରଣ"ରେ ଅର୍ଥାତ୍ ମଧ୍ୟଯୁଗୀୟ ଶୈଳୀରେ ଘଟିଥିଲା । 'ରସରତ୍ନାକର' ତନ୍ମଧ୍ୟରେ ବଡ଼ ହିଁନା, ଅନ୍ତତଃ ସାନ ସାନ ଅନେକ କବିତା ରଚିତ ହେବାର ସୂଚନା ଏହା ମଧ୍ୟରେ ରହିଲା । ଅନ୍ୟ କଥାରେ, ତାଙ୍କ ପ୍ରାଚୀନ ଶୈଳୀର ରଚନା ମଧ୍ୟରେ ଅନେକ କବିତା ଥିଲା । 'ରସରତ୍ନାକର' ଆଜି ଏକମାତ୍ର ଉପଲବ୍ଧ ହୋଇଛି । ଆମର ଦୁର୍ଭାଗ୍ୟ, ତାଙ୍କର ଅପର ପ୍ରାଥମିକ ରଚନା ଗୁଡ଼ିକ ଲୋକଲୋଚନକୁ ଆସିଲା ନାହିଁ । ତାହା ମଧ୍ୟରେ ଚଉତିଶା, ଚଉପଦୀ ବା ପଦାବଳୀ କ'ଣ ସବୁ ଥିଲା ଆମର ଅଜ୍ଞାତ ରହିଗଲା । ଅନେକ ଗୁଡ଼ିଏ କବିତା ମଧ୍ୟରେ ତାଙ୍କ ଲେଖନୀର ସ୍ୱତନ୍ତ୍ର-ଶୈଳୀ-ଚରିତ୍ର ଉପଲବ୍ଧ ହୋଇଥିଲେ ତାହା ଦ୍ୱାରା ତାଙ୍କ ପ୍ରତିଭାର ସ୍ୱରୂପ ପ୍ରମାଣିତ ହୋଇଥାନ୍ତା ।

ରସରତ୍ନାକରର ରଚନାକାଳ ଉପରେ ବିଚାର କଲେ ମନେହୁଏ, ଏହା ୧୮୯୦ର କିଛିକାଳ ପୂର୍ବେ ୧୮୮୮ ବେଳକୁ ଲେଖା ହୋଇଥିବ । କାରଣ ୧୮୮୬କୁ ଅଧ୍ୟୟନ ଓ ପରୀକ୍ଷାର ଶେଷ ଅବଧି ବୋଲି ଧରିନେଲେ ତାହାର ପାଖାପାଖି ପରେ ଲେଖନୀ ଚାଳନା ଆରମ୍ଭ ହୋଇଥିବା ସମ୍ଭବ । ଏହାର ଅପର କାରଣ ହେଉଛି ଯେ କବିଙ୍କ ସାଂସାରିକ ଜୀବନ ଜଞ୍ଜାଳର ଏକ ସମାଧାନ ହେଲା ୧୮୮୫ରେ ଜମିଦାରୀ ସ୍ୱୀକାର ଆରମ୍ଭ ପରେ । ସେହି ତୃପ୍ତି ବା ନୈଶ୍ଚିନ୍ତ୍ୟର ପରିପ୍ରକାଶ ହେଉଛି ଲେଖନୀ ଚାଳନା । (କେତେକ ସମାଲୋଚକଙ୍କ ମତରେ ଏହା ୧୮୯୦ରେ ରଚିତ । ଏହା ସପକ୍ଷରେ ସେମାନଙ୍କ ଦ୍ୱାରା ଉପସ୍ଥାପିତ ପ୍ରମାଣ ବିଚାର୍ଯ୍ୟ ।) କିନ୍ତୁ ଏହାର ରଚନା କାଳ ୧୮୮୮ ବା ୧୮୯୦ ଯାହା ହେଉ, ଏହା ଅବଶ୍ୟ ଅହଲ୍ୟାସ୍ତବ ଓ ଇନ୍ଦୁମତୀର ପୂର୍ବବର୍ତ୍ତୀ ।

ପ୍ରସଙ୍ଗକ୍ରମେ, କବି ସ୍ୱୟଂ ଉପଲବ୍ଧି କରିଥିଲେ ଯେ 'ରସରତ୍ନାକର' ଆଧୁନିକ ରୁଚି ଅନୁକୂଳ ହୋଇନଥିବାରୁ ପ୍ରକାଶଯୋଗ୍ୟ ନୁହେଁ । ଭଗବାନବାବୁ ତାଙ୍କ 'ପିତୃ ପ୍ରସଙ୍ଗ'ରେ ତାଙ୍କ ପିତାଙ୍କର ଏହି ଇଚ୍ଛାର ସୂଚନା ଦେଇଛନ୍ତି (ପୃ : ୧୫୬) । ସୌଭାଗ୍ୟକ୍ରମେ ଏ ଲେଖାଟିର ପାଣ୍ଡୁଲିପି ନଷ୍ଟ ହୋଇନଥିଲା । କବିଙ୍କ ରଚିତ ଅନ୍ୟାନ୍ୟ କ୍ଷୁଦ୍ର କବିତାବଳୀର ବିଶେଷ ଯତ୍ନ ନିଆଯାଇ ନଥିବା ସମ୍ଭବ ।

କିନ୍ତୁ 'ରସରତ୍ନାକର'ର ପ୍ରକାଶିତ ଆଠୋଟି ସର୍ଗକୁ ବିଚାର କଲେ ଏ ରଚନା ପ୍ରାଚୀନ ଶୈଳୀର କବିତା ଭାବରେ ମଧ୍ୟ ବିଶେଷ ହୃଦୟସ୍ପର୍ଶୀ ବୋଲି ମନେ ହୁଏନା । ରୀତି-ଶୈଳୀରେ କବିତା ଆରମ୍ଭ କରିବାପରେ ଗୋଟାଏ ନାୟିକାର ରୂପ ବର୍ଣ୍ଣନା ପ୍ରସଙ୍ଗରେ ଅଙ୍ଗବିଶେଷ ଲାଗି ପଦେ ଅଧେ ଲେଖିଦେଲେ ତାହାଦ୍ୱାରା ରୀତି-ଶୈଳୀର ପ୍ରକୃତ ବନ୍ଧନ ହେବ ନାହିଁ । କେବଳ ଏହି ବର୍ଣ୍ଣନା କ୍ରମଟି ନୁହେଁ; ରସ, ଅଳଙ୍କାର-ବିଳାସ, ଗୂଢ଼ୋକ୍ତି, ଶବ୍ଦାଳଙ୍କାର ପ୍ରୟୋଗ ଇତ୍ୟାଦି ସକଳ ଦିଗରୁ ଏହା ଏକ ଅପୂର୍ଣ୍ଣ ଓ ଅତୃପ୍ତିକର ରଚନା । ୧୮୮୫ ବେଳକୁ ରାଧାନାଥଙ୍କ ଆଧୁନିକ ରୁଚି-ରଚିତ କବିତା ପ୍ରକାଶିତ ହୋଇ ସାରିଥିଲା । ତାହାର ପ୍ରଭାବ ହେଉଛି ବର୍ଣ୍ଣନା ସଂକ୍ଷେପଣ । ଫଳତଃ 'ରସରତ୍ନାକର'ର ପଦାବଳୀରେ ଇତସ୍ତତଃ ସାମାନ୍ୟ ଆଳଙ୍କାରିକ ସ୍ପର୍ଶ ମାତ୍ର ଥିଲା । ଏହା ଆଦୌ ଯଥେଷ୍ଟ ନୁହେଁ । କାରଣ ଅଳଙ୍କାର-ବାହୁଲ୍ୟ, କଳ୍ପନାର ନିରଳସ ଚାଳନା ଫଳରେ ପ୍ରସଙ୍ଗ ବିଶେଷର ନାନାବିଧ ଅବସ୍ଥାର ମଧ୍ୟରେ କବିର ସାଧନା ଓ ଅନୁଭୂତିର ରୂପାୟନ ଅଭାବରେ ରୀତିକାବ୍ୟ ତାହାର ଈପ୍ସିତ ମାଧୁର୍ଯ୍ୟ ପ୍ରାପ୍ତ ହୋଇପାରିବ ନାହିଁ । 'ରସରତ୍ନାକର' ତେଣୁ କବିଙ୍କର ଏକ ପ୍ରାଥମିକ ଉଦ୍ୟମ ରୂପେ ଗ୍ରାହ୍ୟ । ଏଥିରେ ପ୍ରାଚୀନ ଧାରାର ସାଫଲ୍ୟ ମଧ୍ୟ ନାହିଁ । ସ୍ୱୟଂ କବି ଏ ବିଷୟରେ ସଚେତନ ନ ଥିଲେ ଆପଣା ସୃଷ୍ଟି ପ୍ରତି ଏ ଧରଣର ବିମୁଖତା ପ୍ରକାଶ ପାଇ ନ ଥାନ୍ତା । କାରଣ କବିତା ହିଁ କବିଯଶଃପ୍ରାପ୍ତିର ଅବଲମ୍ବନ । ପାଠକ ରୁଚିର ପ୍ରତିକୂଳ ଥିବା ଜାଣିବା ସତ୍ତ୍ୱେ କେବେ କେଉଁ କବି ଆପଣା ରଚନାର ପ୍ରଚାର କାମନା କରିଥିବେ, ଏପରି ସମ୍ଭାବନା ସ୍ୱୀକାର କରି ହୁଏନା ।

ଦ୍ୱିତୀୟ କଥା—ଗଙ୍ଗାଧରଙ୍କ ଦୈନ୍ୟ ଜୀବନ-ବିଳାସର ପରିପନ୍ଥୀ ଥିଲା । ସେହିପରି ତାଙ୍କ ନୈତିକ ଜୀବନ ମଧ୍ୟ ବିଳାସ-ଭାବନାକୁ ଗୋପନ ରଖିବାର ହିଁ ଥିଲା ଅନୁକୂଳ । ଏହା ଫଳରେ 'ପ୍ରଣୟବଲ୍ଲରୀ'ର ମିଳନାତ୍ମକ ତୃତୀୟ ସର୍ଗରେ କାବ୍ୟିକ ଅତୃପ୍ତି ଦେଖାଯାଏ । ଏ ଧରଣର ପ୍ରତିଭା ରୀତିକାଳୀନ ଶୃଙ୍ଗାର ବର୍ଣ୍ଣନା ପାଇଁ ସଂପୂର୍ଣ୍ଣ ଅଯୋଗ୍ୟ କହିଲେ ଚଳିବ । ତେଣୁ 'ରସରତ୍ନାକର'ର ବର୍ଣ୍ଣନାର

ସଂକ୍ଷେପରେ ଯୋଗ୍ୟ ଶୃଙ୍ଗାର-ରସ-ଚିତ୍ର ଯେପରି ବିକଳାଙ୍ଗ ହୋଇଛି ତାହା 'ରସରତ୍ନାକର'ର ଅପର ମୁଖ୍ୟ ଦୁର୍ବଳତା ।

ଗଙ୍ଗାଧରଙ୍କ ପରିବେଶରୁ ଯେଉଁ ଆଲେଖ୍ୟ ପ୍ରସ୍ତୁତ ହୋଇଛି ଏବଂ ତାଙ୍କର ଆନୁଷ୍ଠାନିକ ବା ଅଣ-ଆନୁଷ୍ଠାନିକ ଶିକ୍ଷାର ଯେଉଁ ସ୍ୱରୂପ ବର୍ଣ୍ଣିତ ହୋଇଛି ତହିଁରେ ସମ୍ପର୍କିତ ଗଙ୍ଗାଧରଙ୍କ ଲେଖନୀ କେବଳ ପ୍ରାଚୀନ ଧାରାର କବିତା ଲେଖିବା ପାଇଁ ସମର୍ଥ ହେବା ସ୍ୱାଭାବିକ । କିନ୍ତୁ 'ରସରତ୍ନାକର' ରଚିତ ହେଲା ପରେ ସେ ତହିଁରେ ରସ ଅଥବା ରତ୍ନାକର କାହାରି ଯେତେ ଦୀପ୍ତି ଦେଖାଗଲା ନାହିଁ ଏବଂ ସ୍ୱୟଂ କବି ପାରିପାର୍ଶ୍ୱିକ ପ୍ରଭାବରେ ତାହାହିଁ ଅନୁଭବ କଲେ, ତାହାହେଲେ ତାଙ୍କ କବିତା ରଚନାର ଭଙ୍ଗୀରେ ପରିବର୍ତ୍ତନ କରିବାକୁ ହେବ ଏପରି ଏକ ସୂଚନା ତାଙ୍କ ଦ୍ରବଣ-ବ୍ୟାକୁଳ କବିମନ ଯୋଗାଇ ଦେଇଥିବ । ଏହି ଅତୃପ୍ତି ହିଁ ନବୀନ ଉଦ୍ୟମର ଜନନୀ । ଏଥିଲାଗି ତାଙ୍କ ସମସାମୟିକ କାଳରେ କବି ରାଧାନାଥଙ୍କ କବିତା-ବଳୀ ଥିଲା ପ୍ରକୃତ ଆଦର୍ଶ । ସେଣୁ ସେହି କବିତାର ଅଧ୍ୟୟନ ସହିତ ତହିଁରେ ଥିବା କାବ୍ୟକୌଶଳ ଦ୍ୱାରା ନିଜକୁ ଅନୁପ୍ରାଣିତ କରିବା ପାଇଁ ମୁକ୍ତମନ ଓ ନିଷ୍ଠାପର ଉଦ୍ୟମ ଗଙ୍ଗାଧରଙ୍କ ସାଧନାର ଅପର ଦିଗ । ୧୮୯୪ ବେଳକୁ ବରପାଲି ଯୁବରାଜଙ୍କ ଗୃହଶିକ୍ଷକ ସୂର୍ଯ୍ୟ କୁମାର ମିଶ୍ର ମହାଶୟ 'ରସରତ୍ନାକର' ଉପରେ ମନ୍ତବ୍ୟ ଦେଇ ଗଙ୍ଗାଧରଙ୍କୁ ନୂଆ ଧରଣରେ ଲେଖିବାକୁ ପରାମର୍ଶ ଦେବା ସଙ୍ଗେ ସଙ୍ଗେ ପରୋକ୍ଷରେ 'ରସରତ୍ନାକର' ପ୍ରତି କବିଙ୍କ ନିଜ ପ୍ରତିକ୍ରିୟାର ସମର୍ଥନ ମଧ୍ୟ କଲେ । ଏହାର ଫଳ ହେଲା ୧୮୯୪ରେ ସୂର୍ଯ୍ୟ କୁମାର ବାବୁଙ୍କ ଦ୍ୱାରା ପ୍ରକାଶିତ ଉତ୍କଳ ଲକ୍ଷ୍ମୀର ନୂତନ କାବ୍ୟ କୌଶଳ ।

## ସାଧକ ଗଙ୍ଗାଧରଙ୍କ କାବ୍ୟବିଦ୍ୟାଳୟ : ରାଧାନାଥ କାବ୍ୟ :—

ପ୍ରସଙ୍ଗକ୍ରମେ ବକ୍ତବ୍ୟ ଯେ ପୁରାଣ, ଇତିହାସ ଅଥବା ଲୋକାଶ୍ରୁତ ଜୀବନ-ତତ୍ତ୍ୱ ଭିତ୍ତିରେ କୌଣସି କାବ୍ୟର ବିଷୟ ଚୟନ କରିବା ଏବଂ ତାହାର ସର୍ଗ ବିସ୍ତାରର ଗଢ଼ଣା ମଧ୍ୟରେ ବିଷୟବସ୍ତୁର ଚିତ୍ର ପରିଣତିର ଯୋଜନା କରିବା ଲେଖକର ସୃଜନୀ-ଶକ୍ତିର ପ୍ରତ୍ୟକ୍ଷ ଫଳ । କିନ୍ତୁ ପରିବେଷିତ ଭାବରାଜିକୁ ଏକ ନିର୍ଦ୍ଦିଷ୍ଟ ଶୈଳୀରେ ଅଥବା କାବ୍ୟ-କୌଶଳର ଏକ ସୁଯୋଜିତ ଧାରାରେ ପ୍ରଭାବ-ଶାଳୀ ଭାବେ ଶବ୍ଦମୟ ରୂପ ପ୍ରଦାନ ସଙ୍ଗେ ସଙ୍ଗେ ପାଠକ ପାଇଁ ରୋଚକ ଓ ଇଙ୍ଗିତଧର୍ମୀ କରି ଗ୍ରନ୍ଥନ କରିବାର କୌଶଳ ସାଧନା ବା ଅଭ୍ୟାସର ଅପେକ୍ଷା ରଖେ । ଏହି ସାଧନା କିମ୍ବା ମଧ୍ୟ ଏକ ଶକ୍ତି; କିନ୍ତୁ ପ୍ରାଥମିକ ଅବସ୍ଥାରେ କବିଙ୍କ ଲେଖନୀ ସାଧାରଣତଃ ଚଳିବାକୁ ଚେଷ୍ଟା କରେ ଆପଣା ପୂର୍ବସୂରୀଙ୍କ ପ୍ରଦର୍ଶିତ

ମାର୍ଗର ଅନୁସରଣକ୍ରମେ । ଗଙ୍ଗାଧର ଠିକ୍ ତାହାହିଁ କରିଥିଲେ ବୋଲି ମନେହୁଏ । ପ୍ରେମାତ୍ମକ ବିଷୟ ଚୟନ ଉଦ୍ଦେଶ୍ୟରେ ପୁରାଣର ଉଷା ଅନିରୁଦ୍ଧ ଆଖ୍ୟାନ ବସ୍ତୁ ଗ୍ରହଣରେ ଗଙ୍ଗାଧରଙ୍କ ବିଷୟ ନିର୍ବାଚନୀ ବୁଦ୍ଧିକୁ ପ୍ରଶଂସା କରିବାକୁ ହୁଏ (ଏହା ଅବଶ୍ୟ ସତ୍ୟ ଯେ ଗଙ୍ଗାଧର ଶିଶୁଶଙ୍କରଙ୍କ 'ଉଷାଭିଳାଷ' କାବ୍ୟ ଦେଖି ନ ଥିବେ । କାରଣ ସେହି ଦୃଷ୍ଟାନ୍ତ ସମକ୍ଷରେ ଥିଲେ 'ରସରତ୍ନାକର' ଭଳି ରଚନା ସମ୍ଭବ ହିଁ ହୋଇ ନ ଥାନ୍ତା । ) ଏ ବୃତ୍ତାନ୍ତରେ ଗୋପନ ପ୍ରେମର ରୋମାଞ୍ଚମୟ ଘଟଣା ରହି ଥିବାରୁ ତାହା ରୀତିକାଳୀନ ଶୃଙ୍ଗାର ବର୍ଣ୍ଣନାର ବିହାର ଭୂମି ହେବା ନିମିତ୍ତ ଉପାଦାନବହୁଳ ହୋଇଛି । ତଥାପି ଗଙ୍ଗାଧରଙ୍କ କାବ୍ୟକୁ ପ୍ରତ୍ୟାଶିତ ଗୌରବ ମିଳିଲା ନାହିଁ । ସମ୍ଭବତଃ, ଏହାର କାରଣ ନୁହେଁ ତାଙ୍କ ସାଧନା-ଶକ୍ତିର ଅଭାବ । ବରଂ ତାଙ୍କ ସାଧନା-ଶକ୍ତି ସ୍ୱଚ୍ଛନ୍ଦ ଭାବେ ଯେଉଁ କାବ୍ୟ ସୃଷ୍ଟି କରିଥାନ୍ତା ତାହା ପ୍ରତି ଆଧୁନିକ ଶିକ୍ଷିତ ଗୋଷ୍ଠୀରେ ମିଳି ନ ଥାନ୍ତା ସମ-ସାମୟିକ ରାଧାନାଥଙ୍କ କବିତାର ଆଦର । କେତେ ରୀତି ମଣ୍ଡଳର ବିଷୟ ଚୟନ କରିସାରି ପରିବେଷଣ କାଳରେ ସଂକ୍ଷିପ୍ତ ସରଳ ପ୍ରକୃତିକୁ ଦିଆ ଓହ୍ଲାଇ ଆସିବାର ଫଳ ହେଲା ରଚନାର ଅସାର୍ଥକତା । ମନେହୁଏ ସେ ପର୍ଯ୍ୟନ୍ତ ଗଙ୍ଗାଧର ରାଧାନାଥଙ୍କ କାବ୍ୟକୌଶଳର ସୂତ୍ର ଧରି ପାରି ନ ଥିବା ଯୋଗୁଁ ହିଁ 'ରସରତ୍ନାକର' ତାହାର ସମ୍ଭାବିତ ସାଫଲ୍ୟରୁ ବଞ୍ଚିତ ହେଲା । କବି ରାଧାନାଥ ଆପଣାର ଅପାରଂପରିକ ଅଭିନବ ପ୍ରେମକାବ୍ୟ 'କେଦାର-ଗୌରୀ' 'ଉଷା' 'ଚନ୍ଦ୍ରଭାଗା', 'ନନ୍ଦିକେଶ୍ୱରୀ', ଓ 'ପାର୍ବତୀ'ରେ ଯାହା କରନ୍ତୁ 'ଯଯାତି କେଶରୀ'ର ରୀତିକାଳୀନ ଯୋଜନା ଗ୍ରହଣର ସିଦ୍ଧାନ୍ତ ପରେ ତାହାର ଟେକ୍‌ନିକ୍‌ରେ, ବର୍ଣ୍ଣନା ତଥା ପ୍ରକାଶ ଭଙ୍ଗୀରେ ସରଳୀକୃତ ରୀତିଧାରାକୁ ହିଁ ମାଧ୍ୟମ କଲେ; କିନ୍ତୁ ସଂକ୍ଷେପଣର ସ୍ୱଳ୍ପତା ମଧ୍ୟରେ ସୂକ୍ଷ୍ମ ପାଠକକୁ କଳ୍ପନା ଆସ୍ୱାଦନ କରିବାର ସୁଯୋଗ ଦେବାକୁ ଭୁଲିଲେ ନାହିଁ । ଆଧୁନିକ ଧରଣର କାବ୍ୟ ରଚନା କରିବାର ପ୍ରାୟ ଦଶବର୍ଷ ପରେ ମଧ୍ୟ 'ଯଯାତି କେଶରୀ' କାବ୍ୟକର୍ତ୍ତା ରାଧାନାଥ ରୀତିଶୈଳୀର ଅନୁବର୍ତ୍ତନ କରିବାରେ ଅପୂର୍ବ ସାଫଲ୍ୟ ଦର୍ଶାଇ ମାର୍ଜିତ ରୀତି-କାବ୍ୟ ରଚନା କରିବାରେ ସ୍ୱୀୟ ନୈପୁଣ୍ୟର ପ୍ରମାଣ ଦେଇ ପାରିଥିଲେ । ଏହା ଏକ ବୁଦ୍ଧି-ପ୍ରଯୁକ୍ତ ସୂକ୍ଷ୍ମ ଅନୁଧ୍ୟାନ ଯୋଗୁଁ ସମ୍ଭବ ହୋଇଥିଲା । ପାଠକ ରୁଚିର ଆଧୁନିକମୁଖୀ ପରିବର୍ତ୍ତନ ସଙ୍ଗେ ସଙ୍ଗେ ଓଡ଼ିଆ ପାଠକର ପରମ୍ପରା-ବିଳାସୀ ମନ ରୀତିକାବ୍ୟର ସମ୍ପୂର୍ଣ୍ଣ ବିରୋଧୀ ନ ଥିଲା । ଖୋଜୁଥିଲା ଟିକିଏ ନୂଆକଥା —ଯହିଁରେ ବର୍ଣ୍ଣନା ଅପେକ୍ଷା ରସାଳ ଗଳ୍ପ ହେବ ମୁଖ୍ୟ । ଯୁଗଦେଶର ଅନ୍ତର୍ବର୍ତ୍ତୀକାଳୀନ ପରିବର୍ତ୍ତନ ଘଟୁଥିବା ବେଳେ ପରମ୍ପରା ଓ ପ୍ରଗତିର ଯେଉଁ ସମନ୍ୱୟ ଏକ ସାଧାରଣ ପ୍ରଭାବ ରୂପେ ଆତ୍ମପ୍ରକାଶ କରେ ରାଧାନାଥ ତାହାର ମର୍ମ୍ମ ଉପଲବ୍ଧି କରିବା ସହିତ ଆପଣାର କାବ୍ୟ-ରୂପାୟନ (Experiment)

ମଧ୍ୟରେ ଏହି ନବୀନ-ପ୍ରାଚୀନ-ସମନ୍ୱିତ ଶୈଳୀ ଗ୍ରହଣ କରି ଓଡ଼ିଆ ପାଠକର ଅନ୍ତର ଜୟ କରିବାକୁ ସମର୍ଥ ହୋଇଥିଲେ । କେବଳ 'ଯଯାତି କେଶରୀ' ନୁହେଁ, 'କେଦାର-ଗୌରୀ', 'ଉଷା', 'ଚନ୍ଦ୍ରଭାଗା'ରେ ଅନୁସୃତ ରାଧାନାଥ-ଶୈଳୀ ମଧ୍ୟ ଏହି ମିଶ୍ରଣ-ସମନ୍ୱିତ ଶୈଳୀର ଅନୁପମ ଦୃଷ୍ଟାନ୍ତ । ପ୍ରାଚ୍ୟ-ପାଶ୍ଚାତ୍ୟ ଭାବ ସମନ୍ୱୟ ରାଧାନାଥ ରଚନାର ଆଖ୍ୟାନବସ୍ତୁ ସମ୍ପର୍କିତ ବିଶେଷତ୍ୱ; କିନ୍ତୁ ରୀତି-ମାର୍ଜିତ ସଙ୍ଗୀତ-ମୋହ-ବର୍ଜିତ ଏବଂ ଆଖ୍ୟାନ-ଚମତ୍କାରିତା-ପ୍ରତିପାଦକ ସମୁଜ୍ଜ୍ୱଳୀକୃତ କଳ୍ପନା-ବର୍ଣ୍ଣନା-ସମନ୍ୱିତ ପାଣ୍ଡିତ୍ୟପୂର୍ଣ୍ଣ ରୀତିଶୈଳୀ ତାଙ୍କ କାବ୍ୟ-କୌଶଳର ବିଶେଷତ୍ୱ ।

**ଅହଲ୍ୟାସ୍ତବ .**

ରାଧାନାଥଙ୍କ ମାର୍ଗରେ ପ୍ରାଚ୍ୟ-ପାଶ୍ଚାତ୍ୟ-ଭାବ-ସମନ୍ୱୟ-ମୂଳକ ପରିକଳ୍ପନା କରିବା ଗଙ୍ଗାଧରଙ୍କ ପକ୍ଷରେ ସମ୍ଭବ ନଥିଲା । କାରଣ ଆଧୁନିକ ଇଂରାଜୀ ଶିକ୍ଷାରୁ ବଂଚିତ ହେବାଫଳରେ ପାଶ୍ଚାତ୍ୟ ସାହିତ୍ୟ ସମୁଦ୍ରରେ ଅବଗାହନ କରି ତହିଁରୁ ରତ୍ନ ସଂଗ୍ରହ କରିବା ତାଙ୍କ ଶକ୍ତିର ଅତୀତ ଥିଲା । କିନ୍ତୁ ତାଙ୍କ ଆହରଣ-ପଟୁ ପ୍ରତିଭା କାବ୍ୟ-କୌଶଳ ଦୃଷ୍ଟିରୁ ରାଧାନାଥଙ୍କ କବିତାକୁ ଆଦର୍ଶ ରୂପେ ଗ୍ରହଣ କରି ନେବାପରେ ତାକୁ ଆପଣାର କରିବାର ଅନୁଧ୍ୟାନରେ ଆତ୍ମନିୟୋଗ କରିଥିବ । ତଥାପି ଗଙ୍ଗାଧରଙ୍କ ଶିକ୍ଷାରେ ସଂସ୍କୃତର ଯେଉଁ ବଳବତ୍ତର ପ୍ରଭାବ ଥିଲା ସେହି ଭିତ୍ତିରେ ସଂସ୍କୃତ-ଶ୍ଳୋକ-ସୁଲଭ ବୃତ୍ତିରେ ଅହଲ୍ୟା ସ୍ତବ ରଚନା ହେଲା ତାଙ୍କର ପରବର୍ତ୍ତୀ ସୃଷ୍ଟି । ରାମାୟଣର ଅଭିଶପ୍ତା ଅହଲ୍ୟା ରାମପଦରଜ-ସ୍ପର୍ଶରେ ଶାପମୁକ୍ତ ହେବା ପରେ ରାମଙ୍କୁ ଯେଉଁ ସ୍ତୁତି କରିଥିଲେ ତାହାର କାବ୍ୟ-ରୂପ 'ଅହଲ୍ୟାସ୍ତବ'ର ଉପଜୀବ୍ୟ । ବିଶେଷତ୍ୱ ହେଉଛି ଦୀର୍ଘ କବିତାଟି ସଂସ୍କୃତ ଶାର୍ଦ୍ଦୂଳ ବିକ୍ରୀଡ଼ିତ ଛନ୍ଦରେ ରଚିତ । ସଂସ୍କୃତ ବୃତ୍ତର ଗୁରୁଲଘୁ ନିୟମ ରକ୍ଷା ପାଇଁ ଓଡ଼ିଆ ଉଚ୍ଚାରଣ ସଂପୂର୍ଣ୍ଣ ଅନୁକୂଳ ନୁହେଁ । ତଥାପି ଗଙ୍ଗାଧରଙ୍କ ଲେଖନୀ ଏହି କାବ୍ୟ-ପରୀକ୍ଷାରେ ଯଥେଷ୍ଟ ସଫଳତା ପ୍ରଦର୍ଶନ କରିଥିଲା । କିନ୍ତୁ ପ୍ରଶଂସା ସତ୍ତ୍ୱେ ରାଧାନାଥଙ୍କ ଅନୁକୂଳ ମତ ନ ପାଇବାରୁ ଗଙ୍ଗାଧର ସଂସ୍କୃତର ଏହି ଧାରା ତ୍ୟାଗ କଲେ । ରାଧାନାଥଙ୍କ ପରାମର୍ଶକ୍ରମେ ପରବର୍ତ୍ତୀ ସମୟରେ 'ଅହଲ୍ୟା ସ୍ତବ' ରଚିତ ହେଲା ବଙ୍ଗଳାଶ୍ରୀ ବୃତ୍ତରେ ।

'ଅହଲ୍ୟା ସ୍ତବର' ରଚନାକାଳ ୧୮୯୧ ( ଡିସେମ୍ବର ? ) । ଏହି ପ୍ରକାଶିତ ସମୟକୁ ରାଧାନାଥଙ୍କ 'ମହାଯାତ୍ରା' ଓ 'ଯଯାତି କେଶରୀ' ବ୍ୟତୀତ ଅନ୍ୟ କାବ୍ୟ

ସମ୍ପୃକ୍ତ ରଚିତ ଓ ପ୍ରକାଶିତ ହୋଇ ନବ୍ୟଗୋଷ୍ଠୀର ଆଦର ଲାଭ କରି ସାରିଥିଲା । ୧୮୮୩ ମସିହାରେ 'ଇନ୍ଦୁମତୀ' ରଚନାରେ ଗଙ୍ଗାଧର ସେହି ରାଧାନାଥୀୟ କାବ୍ୟଶୈଳୀ ପ୍ରୟୋଗ କଲେ ; ମାତ୍ର ୭ ମାସ ପୂର୍ବେ 'ଅହଲ୍ୟା ସ୍ତବ' ରଚନା ବେଳକୁ ସେହି ଶୈଳୀ ତାଙ୍କର ଅଜ୍ଞାତ ନ ଥିବା ହିଁ ସମ୍ଭବ । ତଥାପି ଅହଲ୍ୟା-ସ୍ତବ'ରେ ସଂସ୍କୃତର ଅନୁସରଣ ମୂଳରେ ଗଙ୍ଗାଧରଙ୍କ ବ୍ୟକ୍ତିତ୍ୱର ସ୍ୱତନ୍ତ୍ର ଗଠ ହିଁ କାରଣ ବୋଲି ମନେ ହୁଏ । ତାହା'ଥିଲା ସ୍ୱୟଂ ଏକ ପରୀକ୍ଷା । ଏହା ରାଧାନାଥଙ୍କ ଆଶୀର୍ବାଦ ଲାଭ କରିଥିଲେ ଗଙ୍ଗାଧରଙ୍କ ସ୍ୱାତନ୍ତ୍ର୍ୟ-ଚେତନା ନିଜ ସ୍ୱରରେ ସଂସ୍କୃତ ଛନ୍ଦକୁ ଆପଣାର କରିନେବା ଦିଗରେ କି ବିଶେଷତ୍ୱ ପ୍ରଦର୍ଶନ କରିପାରିଥାନ୍ତା ତାହା କେବଳ ସମ୍ଭାବନାର ବିଷୟ ।

'ରସକଲ୍ଲୋଳ'ର ଅସାର୍ଥକ ପରୀକ୍ଷା ପରେ 'ଅହଲ୍ୟାସ୍ତବ' ପ୍ରତି ରାଧାନାଥଙ୍କ ଅସ୍ୱୀକୃତି ଅବଶ୍ୟ ଗଙ୍ଗାଧରଙ୍କ କବିତାର ମାର୍ଗ ନିର୍ଦ୍ଦେଶ କରିଦେଇଥିବ । ଏହି କାଳର ଅପର ଅର୍ଥପୂର୍ଣ୍ଣ ଘଟଣା ହେଉଛି 'ଇନ୍ଦ୍ରଧନୁ' 'ବିଜୁଳି'ର ସାହିତ୍ୟ କଳହ । 'ଇନ୍ଦ୍ରଧନୁ' ପତ୍ରିକାରେ ଉପେନ୍ଦ୍ର ସାହିତ୍ୟର ଗୁଣନିର୍ଣ୍ଣୟ ସହିତ ଚାଲିଥିଲା ରାଧାନାଥ କବିତାର ଦୋଷ ଦର୍ଶନ । 'ବିଜୁଳି' ପତ୍ରିକା ତାର ପ୍ରତ୍ୟୁତ୍ତର ଦେଇ ଉପେନ୍ଦ୍ର କବିତାର ଦୋଷ ଦର୍ଶାଇବା ସଙ୍ଗେ ସଙ୍ଗେ ରାଧାନାଥ ସାହିତ୍ୟର ମହତ୍ତ୍ୱ ପ୍ରଖ୍ୟାପନ କରୁଥିଲା । କହିବା ବାହୁଲ୍ୟ ଯୁଗସନ୍ଧି କ୍ଷଣରେ ଏ ସାହିତ୍ୟିକ ବିବାଦରେ ଆପାତତଃ କବିଦ୍ୱୟଙ୍କ ରଚନାର ଦୋଷଗୁଣ ନିର୍ଣ୍ଣୟ ଉପଜୀବ୍ୟ ହୋଇଥିଲେ ହେଁ ବାସ୍ତବ କ୍ଷେତ୍ରରେ ଏ ଦୁଇ ଯୁଗର କାବ୍ୟାଦର୍ଶ ତଥା ଶୈଳୀ ହିଁ ଥିଲା ବିମୃଶ୍ୟ । ଲୋକମନର ଗ୍ରାହକତା ନିରୂପଣ ହେଲା ଏହି ବିବାଦର ଏକ ପ୍ରାକୃତିକ ଫଳ । ଇଂରାଜୀ ଶିକ୍ଷାର ଲୋକପ୍ରିୟ ପ୍ରସାର ଯୋଗୁ ନବ୍ୟଶିକ୍ଷିତ ମହଲରେ ନୂତନ ରୁଚି ତତ୍କାଳୀନ ଶିକ୍ଷା ମାଧ୍ୟମରେ ଅବଧାରିତ ହୋଇସାରିଥିଲା । ଏହି ପ୍ରାଚ୍ୟ-ପାଶ୍ଚାତ୍ୟ-ସମନ୍ୱୟ-ମୂଳକ ଧାରା ପ୍ରତି ନବ୍ୟଶିକ୍ଷିତ ଲୋକେ ସମର୍ଥନ ଜଣାଉଥିଲେ । ରାଧାନାଥୀୟ କାବ୍ୟର ସାମଗ୍ରିକ ଗୌରବରେ କଥାବସ୍ତୁର ନିପୁଣ ବିନ୍ୟାସ, ଅଭିବ୍ୟକ୍ତି ତଥା ଯଥାଯଥ ଉପସଂହୃତି ସହିତ ଅଭିନବ କାବ୍ୟବୈଚିତ୍ର୍ୟର ଶବ୍ଦାର୍ଥ କଳ୍ପନା-ଅଳଂକାର ପ୍ରୟୋଗ ଓଡ଼ିଆ ପାଠକକୁ ଆମୋଦିତ କରୁଥିଲା । ଫଳତଃ ଅନାୟାସରେ କବୀନ୍ଦ୍ର ଉପେନ୍ଦ୍ରଙ୍କ ଗୋଷ୍ଠୀର ସାହିତ୍ୟ ନବ୍ୟଶିକ୍ଷିତ ସମାଜର ମନୋହରଣ ପ୍ରତିଯୋଗିତାରେ ପଶ୍ଚାଦ୍‌ବର୍ତ୍ତୀ ହେଲା । ଓଡ଼ିଶାର ପୂର୍ବାଞ୍ଚଳରେ ଓଡ଼ିଆ ସାହିତ୍ୟ ପୀଠର ଏହି କ୍ରିୟା ପ୍ରତିକ୍ରିୟାର ବିଶେଷ ପ୍ରଭାବ ହୁଏତ ସମ୍ବଲପୁରରେ କମ୍ବା ଗଙ୍ଗାଧରଙ୍କ ନିଜ ପରିବେଶରେ ଅନୁଭୂତ ହୋଇ ନ ଥାଇପାରେ; କିନ୍ତୁ ଓଡ଼ିଆ-ସାହିତ୍ୟ-ସାଧକ କବିଙ୍କ ସ୍ପନ୍ଦନପ୍ରବଣ ଚିତ୍ତ ପକ୍ଷରେ ଏ ସୂଚନା ଗ୍ରହଣ କରି-

ନେବା ଅତ୍ୟନ୍ତ ସ୍ୱାଭାବିକ ଥିଲା । ଗଙ୍ଗାଧର ଅବଶ୍ୟ ସଚେତନ ହୋଇ ଉଠିଥିବେ ଯେ ତାଙ୍କ 'ରସରତ୍ନାକର' ଅଥବା 'ଅହଲ୍ୟାସ୍ତବ'ର ବିଶେଷତ୍ୱ ସତ୍ତ୍ୱେ ତାହା ଜନସ୍ୱୀକୃତି ଦୃଷ୍ଟିରୁ ଅପାଂକ୍ତେୟ ରଚନା । ତେଣୁ ଏ ଉଭୟ ଧାରାରୁ ସେ ବିରତ ହୋଇଥିବା ସମ୍ଭବ ।

ବାସ୍ତବବାଦୀ ଗଙ୍ଗାଧର ଜନରୁଚିର ଏ ଗତିକୁ ମାନିନେବା ଫଳରେ ରାଧାନାଥୀୟ କାବ୍ୟର ଜନପ୍ରିୟ ଅଭିନବ ଗୁଣାବଳୀ ହୋଇଥିବ ତାଙ୍କର ଧ୍ୟେୟ । ଏହା ସହିତ ରାଧାନାଥଙ୍କ କାବ୍ୟଧାରାର ଦୁର୍ବଳତା ପ୍ରତି ମଧ୍ୟ ସେ ସଚେତନ ଥିଲେ । ପ୍ରେମ-କାବ୍ୟରେ ରାଧାନାଥ ବିବିଧ ଅପାରମ୍ପରିକତା ସହିତ କେତେକ ନିମ୍ନ ରୁଚି ଓ ଆଦର୍ଶହୀନତା ଗ୍ରହଣ କରିବାରେ ଯେଉଁ ସ୍ୱାଚ୍ଛନ୍ଦ୍ୟ ଅବଲମ୍ବନ କରି-ଗଲେ ତାହା କଠୋର ନିନ୍ଦାର ଶରବ୍ୟ ହୋଇଥିଲା । ରାଧାନାଥୀ କାବ୍ୟର ଗଳ୍ପ ଶୈଳୀ ଓ କାବ୍ୟ-କୌଶଳର ଶିଳ୍ପ ସିନା ଅଭିନନ୍ଦିତ ହେଲା; ନିନ୍ଦିତ ହେଲେ ସେ ଗଳ୍ପର ଉଚ୍ଛୃଙ୍ଖଳ, ଆଦର୍ଶହୀନ, ବିଳାସପ୍ରିୟ ନରନାରୀ । ଗଙ୍ଗାଧରଙ୍କ ପାଇଁ ଏଥିରେ ସୂକ୍ଷ୍ମ ସୂଚନାର ଅଭାବ ନଥିଲା । ବିଷୟବସ୍ତୁ ଚୟନରେ ପ୍ରାଚ୍ୟ-ସାମାଜିକ ନୀତି ଓ ଆଦର୍ଶ ହେଲା ତାଙ୍କ ଚିନ୍ତା ଓ କଳ୍ପନାର ଉତ୍ସଭୂମି । ଗଙ୍ଗାଧରଙ୍କ ପାରମ୍ପରିକ ନୀତି, ସଂବର୍ଦ୍ଧିତ ରସରୁଚି ଏବଂ ସଂସ୍କୃତ କାବ୍ୟ-ପୁରାଣ ଭିତ୍ତିରେ ଶିକ୍ଷାପ୍ରାପ୍ତ ମନ ପକ୍ଷରେ ଏହା ଯେ ନାନା ଭାବରେ ସହାୟକ ହେଲା ଏହା କହିବା ବାହୁଲ୍ୟ ମାତ୍ର ।

## ପ୍ରଥମ ସଫଳତା : 'ଇନ୍ଦୁମତୀ'

୧୮୮୨-୧୮୯୨ ଦଶବର୍ଷର ଅଧ୍ୟୟନ, ଅନୁଧ୍ୟାନ ଓ ପରୀକ୍ଷା ନିରୀକ୍ଷାର ପ୍ରାପ୍ତି ଅପ୍ରାପ୍ତି ମଧ୍ୟରେ ଗଙ୍ଗାଧରଙ୍କ କବି ଜୀବନର ବିବର୍ତ୍ତନ ବେଶ୍ କୌତୂହଳୋଦ୍ଦୀପକ । ଏ ବିବର୍ତ୍ତନର ଧାରା ରାଧାନାଥ ମାର୍ଗରେ ଗତି କରିବାର କାରଣ ଆଲୋଚିତ ହୋଇଛି । ଗଙ୍ଗାଧର ନିଜେ ଏହା ଅକୁଣ୍ଠିତ ଭାବେ ସ୍ୱୀକାର କରିଛନ୍ତି । ବ୍ୟକ୍ତିଗତ ପତ୍ରଲିପି ଓ ପ୍ରତ୍ୟକ୍ଷ ସ୍ୱୀକୃତିର ଛଳ, ଅନ୍ୟତ୍ର ଉତ୍କଳଲକ୍ଷ୍ମୀ କାବ୍ୟ ମଧ୍ୟରେ ବି ରାଧାନାଥଙ୍କ ନାମୋଲ୍ଲେଖ ପୂର୍ବକ ତାଙ୍କ ଗୁଣ ସ୍ୱୀକାର କରିବାରେ ନିଜେ ରାଧାନାଥ ମଧ୍ୟ ଅସ୍ୱସ୍ତି ଅନୁଭବ କରିଥିଲେ । ତଥାପି ଏଠାରେ ଏହା ଉଲ୍ଲେଖଯୋଗ୍ୟ ଯେ ଗଙ୍ଗାଧରଙ୍କ କବିତ୍ୱରେ ଏ ବିବର୍ତ୍ତନ ଶେଷକଥା ନୁହେଁ; ବରଂ ତହିଁରେ ଏକ ମାର୍ଜନା-ପ୍ରବଣ ନିତ୍ୟବିବର୍ତ୍ତନର ପ୍ରଥା ଲକ୍ଷ୍ୟ କରିହୁଏ । ତାଙ୍କର ପ୍ରତ୍ୟେକ ପରବର୍ତ୍ତୀ କାବ୍ୟରେ ପ୍ରତିଭାର ନୂତନ ମୁଦ୍ରା ଏହାର ପ୍ରମାଣ ।

୧୮୯୩ ଅକ୍ଟୋବରରେ ଇନ୍ଦୁମତୀର ସଂପୂର୍ଣ୍ଣ ପାଣ୍ଡୁଲିପି ରାଧାନାଥଙ୍କର ହସ୍ତଗତ ହେବାର କେତେ ମାସ ପୂର୍ବରୁ ଏହାର ରଚନାରେ କବି ପ୍ରବୃତ୍ତ ହୋଇ ଥିବେ । ମହାକବି କାଳିଦାସଙ୍କ ରଘୁବଂଶର ପଞ୍ଚମ ସର୍ଗରୁ ଅଷ୍ଟମ ସର୍ଗ ମଧ୍ୟରେ ବର୍ଣ୍ଣିତ ହୋଇଛି ସୂର୍ଯ୍ୟବଂଶର ପ୍ରଖ୍ୟାତଯଶା ନରପତି ଅଜଙ୍କ ଚରିତ । ତାଙ୍କ ପତ୍ନୀ ରୂପେ ରାଣୀ ଇନ୍ଦୁମତୀଙ୍କ ଚରିତ ମଧ୍ୟ ତହିଁରେ ବର୍ଣ୍ଣିତ ହୋଇଛି । ଏହି ପ୍ରସଙ୍ଗର ଅବଲମ୍ବନରେ ଗଙ୍ଗାଧର ରଚନା କଲେ ତାଙ୍କ କାବ୍ୟ ଇନ୍ଦୁମତୀ ।

## 'ଇନ୍ଦୁମତୀ'ର ବିଷୟ ବସ୍ତୁ ଓ ସାଧାରଣ ସମୀକ୍ଷା

ବଙ୍ଗଳାଶ୍ରୀ ବୃତ୍ତରେ ରଚିତ ଇନ୍ଦୁମତୀ କାବ୍ୟ ଦୁଇଟି ଭାଗରେ ବିଭକ୍ତ । ପ୍ରଥମ ଭାଗର ପଦସଂଖ୍ୟା ୧୮୬; ଦ୍ୱିତୀୟ ଭାଗରେ ଅଛି ୧୩୨ ପଦ । ରଘୁବଂଶର ଅଜ ଚରିତ ମଧ୍ୟରୁ ଇନ୍ଦୁମତୀ ସଂପର୍କିତ ଆଖ୍ୟାନ ବସ୍ତୁ ଚୟନ କରିଛନ୍ତି କବି । ବିଦର୍ଭ ନଗରୀରେ ରାଜକୁମାରୀ ଇନ୍ଦୁମତୀଙ୍କ ସ୍ୱୟଂବର ପ୍ରସଙ୍ଗରେ ସାଜସଜ୍ଜା ଏବଂ ଲୋକ-ଜୀବନର ଉଲ୍ଲାସ-ଚଞ୍ଚଳତାର ସୂଚନା ଦେବାପରେ ବିଭିନ୍ନ ଦେଶା-ଗତ ରାଜକୁମାରଙ୍କ ସାଡ଼ମ୍ବର ଉପସ୍ଥିତି ଯୋଗୁଁ ସ୍ୱୟଂବର ସଭାର ମନୋହାରିତ୍ୱ ବର୍ଣ୍ଣିତ ହୋଇଛି । ଏହି ସମୟରେ ସୂର୍ଯ୍ୟବଂଶୀ ରାଜକୁମାର ଅଜଙ୍କ ପ୍ରବେଶରେ ଅନ୍ୟାନ୍ୟ ରାଜକୁମାରଙ୍କ ମନ ନୈରାଶ୍ୟରେ ଆଚ୍ଛନ୍ନ ହୋଇ ଉଠିଛି । ମାତ୍ର ଷୋହଳଟି ପଦରେ ଏ ବର୍ଣ୍ଣନା ପରେ ସଭାରେ ବରମାଲ୍ୟହସ୍ତା ରୂପସୀ ରାଜ-ନନ୍ଦିନୀ ଇନ୍ଦୁମତୀର ପ୍ରବେଶରେ ରାଜପୁତ୍ରମାନଙ୍କ ମନୋଭାବର ଯଥାଯଥ ଆଲେଖ୍ୟ ଅଙ୍କିତ ହୋଇଛି । ତାହାପରେ ସଖୀ ସୁନନ୍ଦା ମୁଖରେ ରାଜପୁତ୍ର ମାନଙ୍କର କୁଳବଂଶର ଗୌରବ ସହିତ ବ୍ୟକ୍ତିଗତ ରୂପ, ଗୁଣ, ଶୌର୍ଯ୍ୟ-ବୀର୍ଯ୍ୟର ପ୍ରଶଂସ ବର୍ଣ୍ଣନା ଦିଆଯାଇଅଛି । ଏହି କ୍ରମରେ ମଗଧେଶ୍ୱର, ଅଙ୍ଗପତି, ଅବନ୍ତୀ-ରାଜ, ପ୍ରତୀପ ନୃପତି, ମଥୁରାଧୀଶ, ଦାକ୍ଷିଣାତ୍ୟ ନରେଶ, ପାଣ୍ଡ୍ୟରାଜଙ୍କ କୀର୍ତ୍ତି ଯଥା-ବିଧି ଉଦ୍‌ଘୋଷିତ ହୋଇଛି । ରାଜକନ୍ୟା ମ୍ଳାନାୟିତ ଛନ୍ଦରେ ଆପଣାର ଅସ୍ୱୀକୃତି ଜଣାଇ ବିନୀତ ପଦରେ ପ୍ରତ୍ୟେକଙ୍କ ସମ୍ମୁଖରୁ ପ୍ରସ୍ଥାନ କଲାବେଳେ ଅବଧୀରିତ ରାଜକୁମାର କ୍ଷୁବ୍ଧ ହୋଇଛନ୍ତି । ତାହାପରେ ସୂର୍ଯ୍ୟବଂଶର କୀର୍ତ୍ତି ଏବଂ ରାଜକୁମାର ଅଜଙ୍କ ରୂପ ଗୁଣ ବର୍ଣ୍ଣନାରେ କବି ଦେଇଛନ୍ତି ୨୬ଟି ପଦ । ସ୍ୱୟଂବରା ରାଜକୁମାରୀଙ୍କ ଅନୁଜ୍ଞା କ୍ରମେ ସଖୀ ସୁନନ୍ଦା ହସ୍ତର ବରମାଳା ଯୁବରାଜ ଅଜଙ୍କ ଗ୍ରୀବା ମଣ୍ଡନ କଲା । ୯୪ରୁ ୧୮୬ ପଦ ମଧ୍ୟରେ ବର୍ଣ୍ଣିତ ହୋଇଛି ରାଜନବର ଯାତ୍ରା, ଦମ୍ପତି ଶୋଭା, ବିବାହୋତ୍ସବ, କନ୍ୟା-ବିଦାୟ ଏବଂ ବିଡ଼ମ୍ବିତ ରାଜାମାନଙ୍କର ପ୍ରତିଶୋଧାତ୍ମକ ଅ.କ୍ରମଣ ଓ ଅଜଙ୍କର ବିଜୟ ପ୍ରାପ୍ତି । ଉତ୍ତରଭାଗ ଆରମ୍ଭ ହୋଇଛି ଅଜଙ୍କ ଅନୁପସ୍ଥିତିରେ ଅଯୋଧ୍ୟାରେ

ଥିବା ବାତ୍ସଲ୍ୟମୟୀ ଅଜମାତାଙ୍କର ବିବିଧ ଆଶା ଆଶଙ୍କାମୟୀ ଅନୁଚିନ୍ତାରେ । ଏହି ସମୟରେ ନନ୍ଦର୍ମତଙ୍କ ଆଗମନ ସଂବାଦରେ ରାଜପୁର ଉତ୍ସବମୁଖର ହୋଇଛି । ତାହାପରେ ରଘୁଙ୍କ ବାନପ୍ରସ୍ଥ ଅବଲମ୍ବନ ତଥା ମହାରାଜ ଅଜଙ୍କର ରାଜ୍ୟ ଶାସନର ମହତ୍ତ୍ୱ ସୂଚନା ସହିତ ଦଶରଥଙ୍କ ଜନ୍ମ ବର୍ଣ୍ଣିତ ହେବା ପରେ ବିଷାଦର ଅଧ୍ୟାୟ ଆରମ୍ଭ ହୋଇଛି । ଅଜ ଇନ୍ଦୁମତୀଙ୍କ ବିଳାସମୟ ଉଦ୍ୟାନ-ବିହାରର ହର୍ଷୋଲ୍ଲାସ ମଧ୍ୟରେ ଆସିଛି ଇନ୍ଦୁମତୀଙ୍କ ମୃତ୍ୟୁର ଦାରୁଣ ଲଗ୍ନ । ଆକାଶଚ୍ୟୁତ ସ୍ୱର୍ଗୀୟ ପାରିଜାତମାଳା ଦର୍ଶନରେ ରାଣୀଙ୍କର ଜୀବନାବସାନ ହୋଇଛି । ଏହାର ପରବର୍ତ୍ତୀ ଅନୁଚ୍ଛେଦର ଉପଜୀବ୍ୟ ବିଖ୍ୟାତ ଅଜବିଳାପର କରୁଣ ଛନ୍ଦ । ମୃତଦାର ରାଜାଙ୍କର ଦୁଃଖଶୋକର ଅପନୋଦନ ଲାଗି ତ୍ରିକାଳଦର୍ଶୀ କୁଳଗୁରୁ ମହର୍ଷି ବଶିଷ୍ଠ ଇନ୍ଦୁମତୀଜନ୍ମର ପୂର୍ବକଥା ଶିଷ୍ୟ ମୁଖରେ ଶୁଣାଇଲେ— କପର ତପସ୍ୟାନିରତ ତୃଣବିନ୍ଦୁଙ୍କ ତପୋବିଘ୍ନକାରିଣୀ ଅପ୍ସରା ହରିଣୀ ଅଭିଶାପଗ୍ରସ୍ତ ହୋଇ ଇନ୍ଦୁମତୀ ରୂପରେ ଜୀବନର ଆମୋଦ ଆଡ଼ମ୍ବର ମଧ୍ୟରେ ସ୍ୱର୍ଗୀୟ ପାରିଜାତ ହାର ଦର୍ଶନରେ ଶାପମୁକ୍ତ ହୋଇ ସ୍ୱର୍ଗଗାମିଣୀ ହେଲ । ବଶିଷ୍ଠଙ୍କ ଉପଦେଶରେ ଶୋକର ପ୍ରାବଲ୍ୟ ସତ୍ତ୍ୱେ ଇନ୍ଦୁମତୀ-ବିରହିତ ରାଜା ଧୈର୍ଯ୍ୟ ରକ୍ଷାକରି କୁମାର ଦଶରଥଙ୍କ ଯୌବରାଜ୍ୟ ପରେ ବାନପ୍ରସ୍ଥ ଗ୍ରହଣ କରି ଦେହତ୍ୟାଗ କଲେ ।

କାବ୍ୟର ପ୍ରଥମ ଭାଗ ଇନ୍ଦୁମତୀ ଚରିତର ସନ୍ଦର୍ଭ ଦୃଶ୍ୟ ଏବଂ ଉତ୍ତର ଭାଗ ସେହି ଚରିତର ଅସାଧାରଣ ଦୃଶ୍ୟ । ଏ କାବ୍ୟରେ ଯେତେ ଉପବିଭାଗ ଅଛି ପ୍ରତ୍ୟେକକୁ ସଂପ୍ରସାରିତ କରିବା ଦ୍ୱାରା ସ୍ୱଳ୍ପାୟାସରେ ଏକ ମହା-କାବ୍ୟ ରଚନା କରାଯାଇ ପାରିଥାନ୍ତା । ପକ୍ଷାନ୍ତରରେ ସେହିପରି କେତେକ ପ୍ରସଙ୍ଗର ଅତି ସଂକ୍ଷିପ୍ତ ବର୍ଣ୍ଣନା ଯୋଗୁଁ ପାଠକର ମନକୁ ରସାବିଷ୍ଟ କଲାଭଳି ପ୍ରଭାବ ସୃଷ୍ଟି କରାଯାଇ ପାରିନାହିଁ ବୋଲି ମନେ ହୁଏ । କାଳିଦାସଙ୍କ ଆହୁରି କେତେକ ଶ୍ଳୋକର ମର୍ମ ଅନ୍ତର୍ଭୁକ୍ତ କରିଥିଲେ ହୁଏତ କାବ୍ୟର ଅଧିକ ରସଘନ ପରିଣତି ସାଧିତ ହୋଇଥାନ୍ତା । କିନ୍ତୁ ତଦ୍ୱାରା କାହାଣୀର ଯେଉଁ ସାନ୍ଦ୍ରତା ଏଥିରେ ଉପଲବ୍ଧ ହୁଏ ତାହା କ୍ଷୁଣ୍ଣ ହେବାର ଆଶଙ୍କା ହୁଏତ ଆସିଥାନ୍ତା ।

'ଇନ୍ଦୁମତୀ' କାଳିଦାସଙ୍କ କାବ୍ୟର ଅନୁବାଦ । କିନ୍ତୁ ଏହା ରଘୁବଂଶର ପଞ୍ଚମ ସର୍ଗର ୩୯ ଶ୍ଳୋକରୁ ଆରମ୍ଭ କରି ଅଷ୍ଟମ ସର୍ଗ ଶେଷ ପର୍ଯ୍ୟନ୍ତ ରହିଥିବା ୨୮୭ ଶ୍ଳୋକର ଅକ୍ଷରିକ ଅନୁବାଦ ନୁହେଁ । ଗଙ୍ଗାଧର ପ୍ରତ୍ୟେକ ଶ୍ଳୋକର ଅନୁବାଦ ପାଇଁ ପ୍ରୟାସ କରି ନାହାନ୍ତି । ପକ୍ଷାନ୍ତରେ ଗ୍ରହଣ

ପ୍ରତ୍ୟାଖ୍ୟାନର ସ୍ୱାତନ୍ତ୍ର୍ୟ ମଧ୍ୟରେ କେତେକ ଶ୍ଳୋକର ଭାବକୁ ଭିତ୍ତି କରି ଯୋଜନା-ବଳେ ସ୍ୱତନ୍ତ୍ର ନିଜ କାବ୍ୟର ଆଖ୍ୟାନ ବସ୍ତୁ ନିର୍ମାଣ କରିଛନ୍ତି । ପ୍ରଥମ କୌଶଳର ଏହି ନୂତନତା କାବ୍ୟକୁ ଅଭିନବ କରିଥାଏ । ଇନ୍ଦୁମତୀଙ୍କ ସ୍ୱୟଂବର ଏବଂ ତାଙ୍କ ଜୀବନକାଳ ଓ ମୃତ୍ୟୁରେ ଅଜଙ୍କ ଜୀବନର ଦଶା ଏହି ଦୁଇଟି ମୁଖ୍ୟ ବିଷୟକୁ ପରିସ୍ଥିତି ସହିତ ସଂଶ୍ଳିଷ୍ଟ କରି ନେବା ଲାଗି ଆବଶ୍ୟକ ଶ୍ଳୋକ ଗୁଡ଼ିକ ହିଁ ଅନୂଦିତ ହୋଇଛି । ଏହି ଅନୁବାଦ ପ୍ରସଙ୍ଗରେ କାଳିଦାସଙ୍କ ମାର୍ଗରେ ଗତି କଲାବେଳେ ମଧ୍ୟ କେତେକ ଭାବ କବିଙ୍କ ଦ୍ୱାରା ଆଦୃତ ହୋଇନାହିଁ । ଏହା ଗଙ୍ଗାଧରଙ୍କ ପକ୍ଷରେ ଅଜ୍ଞତା ପ୍ରସୂତ ବୋଲି କୁହାଯିବ ନାହିଁ । କାରଣ ପ୍ରାୟ ପ୍ରତି ଶ୍ଳୋକର ଅନୁବାଦରେ ଗଙ୍ଗାଧର ଯେଉଁ ନୈପୁଣ୍ୟ ପ୍ରଦର୍ଶନ କରିଛନ୍ତି ତାହା ଅନ୍ୟାନ୍ୟ ଶ୍ଳୋକରେ ମଧ୍ୟ ଉପଯୋଗୀ ହୋଇ ପାରି ନ ଥାନ୍ତା କାହିଁକି ? ବରଂ ଅପର ସମ୍ଭାବନା ସତ୍ୟ ହୋଇପାରେ ଯେ ଗଙ୍ଗାଧର ସ୍ୱୀୟ ଚିନ୍ତା ଓ ସ୍ୱଭାବ-ବିରୋଧୀ ରସଭାବ ପ୍ରସଙ୍ଗକୁ ଉପେକ୍ଷା କରି ଯାଇଛନ୍ତି । ଏହାର ଏକ ସୁନ୍ଦର ଉଦାହରଣ ହେଉଛି ରାଜସଭାରେ ଇନ୍ଦୁମତୀଙ୍କ ପ୍ରବେଶ ପରେ ସମବେତ ରାଜାଙ୍କର ଶୃଙ୍ଗାର ଚେଷ୍ଟା ବର୍ଣ୍ଣନା । କାଳିଦାସ ଷଷ୍ଠ ସର୍ଗ ୧୩ ରୁ ୧୯ ସାତୋଟି ଶ୍ଳୋକରେ ଏ ଶୃଙ୍ଗାର-ଚେଷ୍ଟା ଗୁଡ଼ିକର ମନୋରମ ଧ୍ୱନିଗର୍ଭକ ବର୍ଣ୍ଣନା ଦେଇ-ଛନ୍ତି । ଗଙ୍ଗାଧରଙ୍କ ନୀତି-ସଚେତନ-ପ୍ରକୃତି ଆପଣାର ଭାବଚୟନ କଲାବେଳେ ଏ ଗୁଡ଼ିକୁ ପରିହାର କରିଥିବା ଏକାନ୍ତ ସମ୍ଭବ । ଗ୍ରହଣ ତଥା ପ୍ରତ୍ୟାଖ୍ୟାନ ଉଭୟ କ୍ଷେତ୍ରରେ ଦେଖିବା କଥା ତାଙ୍କ ନିର୍ବାଚନୀ ପ୍ରତିଭାର କାର୍ଯ୍ୟ । କହିବା ବାହୁଲ୍ୟ ଏ ସାଫଲ୍ୟର ବିଚାର ପାଇଁ ମାନଦଣ୍ଡ ହେଉଛି ଗଳ୍ପର ସାନ୍ଦ୍ରତା । 'ଇନ୍ଦୁମତୀ'ର କବି ଗଙ୍ଗାଧରଙ୍କ ପକ୍ଷରେ ବିଷୟର ଅବଧାରଣ ତଥା ତାହାର ସାନ୍ଦ୍ର ଗ୍ରନ୍ଥନରେ ତାଙ୍କ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ରହିଛି । ଆମୂଳାନ୍ତ ସମଗ୍ର ରଚନାଟିରେ ଘଟଣାଗୁଡ଼ିକର ସଂକ୍ଷିପ୍ତ ଓ ସୁଯୋଜିତ ଉଲ୍ଲେଖ ମଧ୍ୟରେ କାହାଣୀ-ଧର୍ମୀ ଗଳ୍ପ ପ୍ରତିଭାଶାଳୀ ହୋଇଉଠିଛି । ରାଧାନାଥଙ୍କ 'କେଦାର ଗୌରୀ' ଓ 'ଚନ୍ଦ୍ରଭାଗା'ରେ ଏ ଶୈଳୀ ଥିଲା । 'ଉଷା' କାବ୍ୟର ବିଷୟ ସହିତ ଇନ୍ଦୁମତୀର କେତେକ ମୁଖ୍ୟ ଅଂଶର ସାମ୍ୟ ସତ୍ତ୍ୱେ 'ଉଷା'ର ଚିତ୍ରମୟ ଅରଣ୍ୟ ଶୋଭା ତଥା ସ୍ଥାନ-ବର୍ଣ୍ଣନାର ବହୁଳତାରେ ବିଷୟବସ୍ତୁ ଅଲକ୍ଷ୍ୟରେ ଯତ୍ କିଞ୍ଚିତ ସାମାନ୍ୟ କେନ୍ଦ୍ରଚ୍ୟୁତ ହୋଇଥାଏ; 'ଇନ୍ଦୁମତୀ'ରେ ରାଜପୁତ୍ର ମାନଙ୍କର ବର୍ଣ୍ଣନା ସତ୍ତ୍ୱେ ସ୍ଥାନକାଳର ଔଚିତ୍ୟ ଯୋଗୁଁ ଘଟଣାର ସାନ୍ଦ୍ରତା ସୁରକ୍ଷିତ ହୋଇପାରିଛି । 'ଇନ୍ଦୁମତୀ'ର ଅପର ବୈଶିଷ୍ଟ୍ୟ କବିଙ୍କର ନୂତନ ସଂଯୋଜନ । "ଅନାବୃତ ସ୍ଥାନେ ଥିଲେ ଯଥା ଶୀତଳଶାନ୍ତେ ଲୌହ ଶାବଳ" କାବ୍ୟଟିରେ ମୌଳିକ ଉପମା ପ୍ରୟୋଗ, ଅନ୍ୟତ୍ର—

"ଚିରସ୍ଥାୟୀ ନୁହେଁ ଶୋଷର ପାଦପ ଭବ-ତରଙ୍ଗିଣୀ ତୀରେ
ପ୍ରାଣ-ମୂଳମାଟି ଧୌତ ହୋଇଗଲେ ଖସିଯାଏ କାଳ ନୀରେ ।
କେହି ତ କାହାର ନୁହନ୍ତି ସ୍ୱଜନ ମାୟା ମତ୍ର ଭବହାଟେ
ଆପଣା ଆପଣା କହୁଛି ସବୁଲେ ଫେରୁଛନ୍ତି ନିଜ ବାଟେ ।

ଏହି ପଦମାନଙ୍କରେ ରୂପକ ପ୍ରୟୋଗର ମନୋହାରିତ୍ୱର କାରଣ ହୋଇଛି ଅଭିନବ ସଂଯୋଜନ । ଏହାର ଅପର ବହୁ ଦୃଷ୍ଟାନ୍ତ କାବ୍ୟରେ ରହିଛି ।

ଏ କାବ୍ୟର ଭାଷା ବିଷୟରେ ରାଧାନାଥଙ୍କ ମନ୍ତବ୍ୟଟି ଉଲ୍ଲେଖଯୋଗ୍ୟ । ସେ କହିଥିଲେ, "ଏହାର ଭାଷା ସରଳ, ଅକ୍ଲିଷ୍ଟ ଓ ଶ୍ରୁତିମଧୁର ।" ପ୍ରକୃତରେ ରାଧାନାଥଙ୍କ କାଳରେ କାବ୍ୟର ଏକ ମୁଖ୍ୟ ପ୍ରତିପାଦ୍ୟ ଥିଲା ଏହି ଧରଣର ଭାଷା । ଏହା ଭଞ୍ଜୀୟ ଭାଷା ଅଥବା 'ରସରତ୍ନାକର'ର ଭାଷାଠାରୁ ଭିନ୍ନ ପ୍ରକୃତିର । ରାଧାନାଥ ଓଡ଼ିଆ କାବ୍ୟରେ ସେହି ସରଳ, ଗମ୍ଭୀର, ଭାବଦ୍ୟୋତକ ଅଥଚ ବିଦଗ୍ଧ-ଜନ-ମନୋହର ଭାଷାର ପ୍ରବର୍ତ୍ତକ, ଏହା ଅବିସମ୍ବାଦିତ । ଗଙ୍ଗାଧରଙ୍କ କାବ୍ୟରେ ନବ୍ୟ କାବ୍ୟର ଏହି ଧର୍ମ ରାଧାନାଥଙ୍କୁ ବିଶେଷ ଆକୃଷ୍ଟ କରିଛି ।

'ଇନ୍ଦୁମତୀ' କାବ୍ୟ ବିଷୟରେ ରାଧାନାଥଙ୍କ ସଂକ୍ଷିପ୍ତ ମନ୍ତବ୍ୟର ଆଉ ଦୁଇଟି ବାକ୍ୟ ମଧ୍ୟ ଅତ୍ୟନ୍ତ ଅର୍ଥପୂର୍ଣ୍ଣ । "ମୂଳଚରିତ ରଘୁବଂଶରୁ ସଂଗୃହୀତ ହୋଇଥିଲେ ହେଁ ଏହାର ଭାବ ଏବଂ ଭାଷା ଦୃଷ୍ଟିରୁ ମୁଁ ଏହାକୁ ଅଭିନବ ଏବଂ ଉତ୍କୃଷ୍ଟ କାବ୍ୟ ରୂପେ ଗ୍ରହଣ କରିବାକୁ ଲବମାତ୍ର କୁଣ୍ଠିତ ହେବନାହିଁ । ଗ୍ରନ୍ଥକାର ଏଥିରେ ଅନେକ ନୂତନ ଏବଂ ସୁନ୍ଦର ଭାବ ସନ୍ନିବେଶିତ କରିଛନ୍ତି । ରାଧାନାଥଙ୍କ ଏହି ସ୍ୱୀକୃତିରେ ଯେଉଁ ଆନ୍ତରିକତା ଅଛି, ମେହେରଙ୍କ କବି ପ୍ରତିଭାର ତାହା ଶ୍ରେଷ୍ଠ ପ୍ରଶଂସା-ପତ୍ର । ମହାକବି କାଳିଦାସଙ୍କ ମାର୍ଗରେ ଗତି କଲା-ବେଳେ ମଧ୍ୟେ ମଧ୍ୟେ ନିଜର ସ୍ୱାତନ୍ତ୍ର୍ୟକୁ ସ୍ଥାନ ଦେଇ ଏକ ଅଭିନବ, ସ୍ୱାଭାବିକ ବିନ୍ୟାସ କରିବା ମୂଳରେ ଥିଲା କବିଙ୍କ ସ୍ୱକୀୟ ଅନୁଭବ ତଥା ସାଧନା-ପ୍ରସୂତ ଆତ୍ମବିଶ୍ୱାସ, ଏବଂ ସାହସିକତା । ବିଶେଷତଃ 'ରସରତ୍ନାକର' ଏବଂ 'ଅହଲ୍ୟା-ସ୍ତବ'ର ଭାଷା ଯେ ବିବର୍ତ୍ତିତ ହୋଇ 'ଇନ୍ଦୁମତୀ'ର ଅଭିନବ ପ୍ରକାଶ ମାଧ୍ୟମରେ ପରିଣତ ହେଲା, ଏହା ସାଧକ ଗଙ୍ଗାଧରଙ୍କ ନିପୁଣ ଅନୁଧ୍ୟାନ ତଥା ଆହରଣ-କୁଶଳତାର ଫଳ କହିଲେ ସୁସଙ୍ଗତ ହେବ ।

ମୟୂରଭଞ୍ଜରୁ ପ୍ରକାଶିତ ପ୍ରଚାରଧନ୍ୟ 'ଉତ୍କଳପ୍ରଭା'ର ସୁଚିନ୍ତିତ ବିବେଚନାରେ ସମଗ୍ର 'ଇନ୍ଦୁମତୀ'ର ପ୍ରକାଶ ଯୋଗ୍ୟ ବିବେଚିତ ହେଲା ଏବଂ ୧୮୯୪ ଫେବ୍ରୁଆରୀ ଓ ଏପ୍ରିଲ ସଂଖ୍ୟାମାନଙ୍କରେ ପ୍ରକାଶିତ ହେଲା । ତତ୍କାଳୀନ ଓଡ଼ିଶାରେ ଏ ସାହିତ୍ୟିକ ସ୍ୱୀକୃତି ସହ ତାଙ୍କୁ ସେ କାଳର ଉତ୍କଳପ୍ରଭା ସାହିତ୍ୟିକ ପୁରସ୍କାର ମଧ୍ୟ ମିଳିଥିଲା । ଗୋଟିଏ କଥାରେ କହିଲେ କବିଙ୍କ ସାଧନାର ଏହି ଆଦ୍ୟ ଅର୍ଘ୍ୟ ଅବିସମ୍ବାଦିତ ଭାବେ ଏକ ଉତ୍କୃଷ୍ଟ ସାହିତ୍ୟିକ କୀର୍ତ୍ତିର ଗୌରବ ଲାଭ କଲା । କବିବର ରାଧାନାଥଙ୍କ କଥାରେ ତାହା ହେଲା "ଉତ୍କଳଭାରତୀଙ୍କ ସ୍ଥାୟୀ ସମ୍ପତ୍ତି ।" ଗଙ୍ଗାଧର ମେହେରଙ୍କ ପ୍ରତିଭା ତଥା ସାଧନା ଉଭୟ କବିତ୍ୱ ଏହି ପ୍ରୋତ୍ସାହନର ସୁଦୂର ପ୍ରସାରୀ ଫଳ ଅନସ୍ୱୀକାର୍ଯ୍ୟ ।

## 'ଉତ୍କଳ ଲକ୍ଷ୍ମୀ' : ଓଡ଼ିଆ ଜାତୀୟତାର କାବ୍ୟାକାର ବିନ୍ୟାସ

ଏହି ଉତ୍ସାହର ପରବର୍ତ୍ତୀ ଫସଲ ହେଉଛି 'ଉତ୍କଳଲକ୍ଷ୍ମୀ' । ଐତିହାସିକତା ଦୃଷ୍ଟିରୁ ଏହା ୧୮୮୮-୧୮୯୪ ପୂର୍ବରୁ ଲିଖିତ ହୋଇଥିଲା । ଅର୍ଥାତ୍ 'ଇନ୍ଦୁମତୀ' ର ବିପୁଳ ସାଫଲ୍ୟ ପରେ ପରେ ଏହାର ପରିକଳ୍ପନାରେ ଗଙ୍ଗାଧର ଆତ୍ମନିୟୋଗ କଲେ । ବଙ୍ଗଳାଶ୍ରୀ ବୃତ୍ତରେ ରଚିତ ଏହି ଖଣ୍ଡ କାବ୍ୟ ୧୮୯୪ ଶେଷରେ 'ହିତୈଷିଣୀ' ରେ ପ୍ରକାଶିତ ହେବା ବେଳକୁ ଏଥିରେ ଥିଲା ମାତ୍ର ୧୧୬ଟି ପଦ । ପରେ ଆହୁରି ୮୭ଟି ପଦ ସଂଯୋଜିତ ହୋଇଥିଲା ଏବଂ ଏହାର ସମ୍ପୂର୍ଣ୍ଣ ରୂପ ସ୍ୱତନ୍ତ୍ର କାବ୍ୟ ଆକାରରେ ପ୍ରକାଶିତ ହେଲା ୧୯୧୪ରେ ।

'ଉତ୍କଳଲକ୍ଷ୍ମୀ' ଏକ ସମ୍ପୂର୍ଣ୍ଣ କାଳ୍ପନିକ କାବ୍ୟ । ପ୍ରଚଳିତ କାବ୍ୟ ପରମ୍ପରା ଅନୁଯାୟୀ ଏହା ପୌରାଣିକ ବା ଐତିହାସିକ ଆଖ୍ୟାନ ବସ୍ତୁ, ଘଟଣା ବା ଚରିତ୍ର ସମ୍ବଳିତ ନୁହେଁ । ପକ୍ଷାନ୍ତରେ ଏହା ରାଧାନାଥଙ୍କ 'ଚିଲିକା' କାବ୍ୟ ପରି ପ୍ରକୃତି-କାବ୍ୟ ମଧ୍ୟ ନୁହେଁ । ଏହାର ଏହିପରି ବିଲକ୍ଷଣତା ଏହାକୁ ଏକ ସ୍ୱତନ୍ତ୍ର କାବ୍ୟରେ ପରିଣତ କରି ଦେଇଛି । ଏ କାବ୍ୟ ରଚନାର ପ୍ରେରଣାଭୂମି ହେଉଛି ୧୮୯୪ ବେଳକୁ ସମ୍ବଲପୁର ଅଞ୍ଚଳର ସାଂସ୍କୃତିକ ପ୍ରାଣସ୍ପନ୍ଦନ ।

## ସମ୍ବଲପୁରରେ ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ :

ଏହି ସମୟକୁ ସମ୍ବଲପୁର ଥିଲା ମଧ୍ୟପ୍ରଦେଶର ଏକ ଜିଲ୍ଲା । ଏହି ସୀମାନ୍ତ ଜିଲ୍ଲା ଥିଲା ସେ ପ୍ରଦେଶର ଏକମାତ୍ର ଓଡ଼ିଆ ଭାଷୀ ଅଞ୍ଚଳ । ନାଗପୁରର ହିନ୍ଦୀଭାଷୀ କର୍ମଚାରୀଙ୍କ ପ୍ରଭାବରେ ପ୍ରାଦେଶିକ ସରକାର ଏହି ଜିଲ୍ଲାର ଅଫିସ

କଚେରିର ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ପ୍ରଚଳନ ପାଇଁ ଚିନ୍ତିତ କରୁଥିବା ବେଳେ ଏ ଅଞ୍ଚଳରେ ଓଡ଼ିଆ ଭାଷା ବିଲୋପର ଆତଙ୍କ ଦେଖା ଦେଇଥିଲା । ସେତେବେଳେ ୧୮୮୯ରୁ ପ୍ରକାଶିତ ହେଉଥିବା 'ସମ୍ବଲପୁର ହିତୈଷିଣୀ' ଏ ଉଦ୍ୟମ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲା । କବି ଗଙ୍ଗାଧର ମଧ୍ୟ ଏ ଘଟଣାରେ ଗଭୀର ଭାବେ ପ୍ରଭାବିତ ହୋଇଥିଲେ । ୧୮୯୪ରେ ସେହି 'ସମ୍ବଲପୁର ହିତୈଷିଣୀ' ରେ ପ୍ରକାଶିତ ତାଙ୍କ କବିତା 'ଭାରତୀ ଭେଦନ' ରେ ଉତ୍କଳ ଭାରତୀ ତା "ଗ୍ରୀବାରେ ବସି ହିନ୍ଦୀ ସରସ୍ୱତୀ କରିବ ପଦ୍ମ ଗ୍ରାସନ୍ତି" କଳ୍ପନାରେ ଆର୍ତ୍ତନାଦ କରି ଆକୁଳ ଆହ୍ୱାନରେ ଓଡ଼ିଆ ଭାଷୀଙ୍କୁ ଜାଗ୍ରତ କରି କହିଛନ୍ତି—"ବେଳ ଥାଉଁ ବନ୍ଧ ବାନ୍ଧରେ ଭ୍ରମର ।" ଗଙ୍ଗାଧରଙ୍କ ଏହି ଭାବନା ତାଙ୍କ ଅପର କବିତା "ଉତ୍କଳ ଭାରତୀଙ୍କ ନିବେଦନ"ରେ ଆହୁରି ସ୍ପଷ୍ଟ ରୂପେ ପ୍ରକାଶ ପାଇଛି । ଏହି ଓଡ଼ିଆ ଭାଷା ବିଲୋପ ଉଦ୍ୟମ ବିରୋଧରେ ଯେଉଁ ଆନ୍ଦୋଳନ ହୋଇଥିଲା ଗଙ୍ଗାଧର ତାହାକୁ କାବ୍ୟରୂପ ଦେବାକୁ ଯାଇ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକୀକରଣର କଳ୍ପନା କରି ବସିଥିଲେ ଏବଂ ଗଢ଼ି ବସିଲେ ଗୋଟିଏ ଲକ୍ଷ୍ମୀ ମୂର୍ତ୍ତି । ଏହି ଲକ୍ଷ୍ମୀ ହେଉଛନ୍ତି "ଉତ୍କଳ-ଲକ୍ଷ୍ମୀ" । ଗଙ୍ଗାଧର ତାଙ୍କ କାବ୍ୟର ଆରମ୍ଭରେ ମଙ୍ଗଳାଚରଣ କରି ଲେଖିଥିଲେ "ଜୟ ଗୋ ଉତ୍କଳ ଲକ୍ଷ୍ମୀ" । ଓଡ଼ିଆ କାବ୍ୟ ପରମ୍ପରାରେ ମଙ୍ଗଳାଚରଣରେ ଯେଉଁ ଧାରା ଥିଲା ତହିଁରେ ଦେବଦେବୀ ଥିଲେ; ସରସ୍ୱତୀ ଥିଲେ, କିନ୍ତୁ ଦେଶମାତାର ଲକ୍ଷ୍ମୀ ରୂପ ପରିକଳ୍ପିତ ବା ବନ୍ଦିତ ହୋଇ ନ ଥିଲା । ଏହା ଏକ ସମ୍ପୂର୍ଣ୍ଣ ଅଭିନବ କଳ୍ପନା । ଏହାର ଭିତ୍ତି ଗଙ୍ଗାଧରଙ୍କ ବଳିଷ୍ଠ ଜାତୀୟ ଭାବ ଚେତନା ଏବଂ ତାହାକୁ ରୂପ ଦେବାରେ ତାଙ୍କର ସାହସିକ ଉପସ୍ଥାପନ । ଏହା ନିଃସନ୍ଦେହ ଯେ 'ଇନ୍ଦୁମତୀ' କାବ୍ୟ ରଚନାରେ ମିଳିଥିବା ସାଫଲ୍ୟ ଯୋଗୁଁ ତାଙ୍କର ଦୃଢ଼ୀଭୂତ ଆତ୍ମପ୍ରତ୍ୟୟ ହିଁ ତାଙ୍କୁ ଏହି ନୂତନ ସୃଷ୍ଟି ଦିଗରେ ପ୍ରେରିତ କରିଛି ।

## କାବ୍ୟର ବିଷୟ ପରିଚୟ :

'ଉତ୍କଳ-ଲକ୍ଷ୍ମୀ'ର କାବ୍ୟ-ଶରୀର ମୁଖ୍ୟତଃ ପଶ୍ଚିମ ଓଡ଼ିଶାର ପ୍ରକୃତି ବର୍ଣ୍ଣନାକୁ ନେଇ ଗଠିତ । ମାତ୍ର ଦଶୋଟି ପଦରେ ଶୈଳ ଶାଦ୍ୱଳ, କାନନ ପବନ, କୁସୁମ ଦୂର୍ବାଦଳ, ମୃଗମୃଗୀ, ଖଗ ବିହଙ୍ଗମ ପ୍ରଭୃତିର ସାମାନ୍ୟ ଉଲ୍ଲେଖ ପରେ କବି ବର୍ଣ୍ଣନା କରିଛନ୍ତି ପ୍ରଧାନ ପାତ୍ରର "ଉତ୍ଫୁଲ୍ଲ ରମ୍ୟ ସୀମନ୍ତ", ମହାନଦୀର ଗ୍ରୀମ୍ମଦର୍ପ ଗର୍ଭରେ ଗୋଧୂଳିକାଳୀନ ସୂର୍ଯ୍ୟବିମ୍ବ ଛଳରେ "ଉଦ୍ୟ ମଥାମଣି", ସମୁଦ୍ରକୂଳରେ ମୁକ୍ତାହାର ସଦୃଶ ଗଡ଼ଜାତ ଦେଶ ରୂପକ ପଦକ ହାର ମଧ୍ୟରେ ଶ୍ରୀରାମ ( ରାମଚନ୍ଦ୍ର ଭଞ୍ଜ ଦେବ ), ସୁଭଳ ( ବାସୁଦେବ ସୁଢ଼ଳ

ଦେବ ପ୍ରମୁଖ ପୁରୁଷମାନେ, ଯେଉଁମାନେ ବିରାଜିତ ଚତୁର କାନ୍ତି ନେଇ । ମସ୍ତକଶୋଭୀ କୁସୁମସଂଯୁକ୍ତ ଅଛନ୍ତି ଯଶସ୍ବୀ-ପଣ୍ଡିତ-କବି ରୂପକ ସୁବାସିତ ପୁଷ୍ପରାଜି । ଏହିପରି ଅଳଂକୃତା ଉତ୍କଳ-ଲକ୍ଷ୍ମୀଙ୍କ ପ୍ରକୃତିର ଆଲେକ ସେବା-କରେ, ଯାମିନୀ-କାମିନୀ ମଧ୍ୟ କେତେବେଳେ ଚନ୍ଦ୍ରିକାଚନ୍ଦନ କେତେବେଳେ ଅବା କସ୍ତୁରୀ ଲେପନ କରି ଆପ୍ୟାୟିତ କରେ । ତେଣୁ ପରମ ରୂପବତୀ, ମହା ମହିମାମୟୀ ଏ ଉତ୍କଳଲକ୍ଷ୍ମୀଙ୍କ ପ୍ରତି ଆକୃଷ୍ଟ ହୋଇ ପ୍ରଭୁ ଜଗନ୍ନାଥ, କାଶୀ-ବିହାରୀ ହରିଲେଚନ ଅଧି ଏକାମ୍ର ନୀଳାଚଳରେ ଆସ୍ଥାନ କରିବାକୁ ଜାହ୍ନବୀ ଆସିଲେ ଚନ୍ଦ୍ରଭୋଗ୍ୟା ରୂପରେ । ସାର୍ବଜ୍ଞିଦ, ଭୂମା ପ୍ରକୃତିର ଉଦ୍‌ଭବ ଓ ସମୃଦ୍ଧିର କାରଣ ହେଲେ ସେହି ଜାହ୍ନବୀ । ଏ ଉତ୍କଳଲକ୍ଷ୍ମୀ ପ୍ରକୃତିର ଆଡ଼ମ୍ବରପୂର୍ଣ୍ଣ ବନ୍ୟାସ୍ପ-ବିଳାସ ମଧ୍ୟରେ ସ୍ୱକୀୟ ଗୌରବ ନେଇ ପ୍ରତିଷ୍ଠିତା ।

କାବ୍ୟର ପରବର୍ତ୍ତୀ ଖଣ୍ଡରେ କବି ଏକ କାଳ୍ପନିକ ଉପନ୍ୟାସ ମଧ୍ୟରେ ଦେଖିଛନ୍ତି ଜନୈକା ଅଂଗ୍ରାଧୀ ଦେବୀଙ୍କୁ । "ଉତ୍କଳର ଗୂଢ଼ ରହସ୍ୟ ଗୋଟିଏ ଆଜ ଦେଖାଇବି ତୋତେ", କହି ସେହି ପରମା ସୁନ୍ଦରୀ କଳ୍ପନା-ଦେବୀ ଗଙ୍ଗାଧରଙ୍କୁ ଏକ ଦିବ୍ୟରଥରେ ବସାଇ ଯାଇ ପହଞ୍ଚିଲେ ଏକ ବିଚିତ୍ର ସୁନ୍ଦର ପୁରରେ । ସେଠାରେ ହୀରକ ଖଚିତ ସ୍ତମ୍ଭ ଉପରେ ନିର୍ମିତ ଏକ ରଜତ ମନ୍ଦିର ମଧ୍ୟରେ ଗଜଦନ୍ତ ନିର୍ମିତ ଧବଳ କୁସୁମମୟ ଆସନରେ ଉପବିଷ୍ଟ କାନ୍ତିମୟ ଯୁବା; ତାଙ୍କ ବାମ ପାର୍ଶ୍ୱରେ ସମାସୀନା ଥିଲେ ଏକ ଶ୍ୱେତବସନା ଅପୂର୍ବ ସୁନ୍ଦରୀ ଯୁବତୀ । ଚନ୍ଦ୍ର ଏବଂ ଚନ୍ଦ୍ରପ୍ରିୟା ରୋହିଣୀ । ବିଧାତା ବିଧାନରେ ସତାଇଶଟି ନକ୍ଷତ୍ରଙ୍କ ଜୀବନ-ବଲ୍ଲଭ ଏହି ବହୁଦାର ଚନ୍ଦ୍ରଦେବତାର ମାସିକ ରୋହିଣୀପୁର-ବିହାର ଶେଷରେ ସ୍ଖଳିତ ହିଁ ସଦାପ୍ରଫୁଲ୍ଲା । କର୍ତ୍ତବ୍ୟ ପରାୟଣ ପୁରୁଷର ଆଦର୍ଶ ଏବଂ ଆସନ୍ନ ବିରହ-କାତର-ପ୍ରିୟାର ବ୍ୟଥା ବେଦନା ମଧ୍ୟରେ ଲାଗିଥିବା ଚିରନ୍ତନ ସଂଘର୍ଷର ସମାଧାନ କଣ ? ଚନ୍ଦ୍ର ଆଶ୍ୱାସନା ଦେଲେ, ଦେବତା ଜୀବନର କଠୋର କର୍ତ୍ତବ୍ୟ ନିଗଡ଼ରୁ ମୁକ୍ତ ପାଇ ମର୍ତ୍ତ୍ୟରେ ମାନବ ମାନବୀ ରୂପ ନେଲେ ଯାଇ ନିରବଚ୍ଛିନ୍ନ ଦାମ୍ପତ୍ୟ ସୁଖ ହେବ ସମ୍ଭବ ହେବ । କିନ୍ତୁ କେଉଁଠାରେ ? ଧରାମଣ୍ଡଳରେ ସେଭଳି ଉପଯୁକ୍ତ ସ୍ଥାନ କେଉଁଠି ? ଅବଶ୍ୟ ତାହା ଏହି ଉତ୍କଳ-ଲକ୍ଷ୍ମୀର ନିସର୍ଗ-ସୁନ୍ଦର ପବିତ୍ର ଭୂମିରେ, ଯେଉଁଠାରେ ସକଳ ଦେବଦେବୀଙ୍କ ଉପସ୍ଥିତିର ଆକର୍ଷଣ ଯୋଗୁଁ ଦେବଗୁରୁ ବୃହସ୍ପତି ସୁତଳ ଦେବ ରୂପେ ଅବତୀର୍ଣ୍ଣ ହେବେ—ଯେଉଁଠାରେ ଦେବତା ରାଜ୍ୟର କବି ଶୁକ୍ର ସ୍ୱୟଂ ରାଧାନାଥ ନାମ ଧାରଣ କରି କାବ୍ୟରଚନା ଉଦ୍ଦେଶ୍ୟରେ ଉପସ୍ଥିତ ରହିଛନ୍ତି । ଉତ୍କଳ-ଲକ୍ଷ୍ମୀଙ୍କୁ ଭାରତ ବିଖ୍ୟାତ କରିବା ହିଁ ତାଙ୍କ କାବ୍ୟର ହେବ ଲକ୍ଷ୍ୟ । ସେହି ପବିତ୍ର ଅଞ୍ଚଳରେ ଅବସ୍ଥିତ ମୟୂରଭଞ୍ଜ

ରାଜ୍ୟରେ ମହାରାଜା କୃଷ୍ଣଚନ୍ଦ୍ର (ଭଞ୍ଜ)ଙ୍କ କୁମାର ରୂପେ ଜନ୍ମଗ୍ରହଣ କରି ଚନ୍ଦ୍ର ନିଜର ନାମ ଗ୍ରହଣ କରିବେ ଶ୍ରୀରାମଚନ୍ଦ୍ର ( ଭଞ୍ଜ ), ପ୍ରଶ୍ନ ( ଉତ୍କଳପ୍ରଶ୍ନ ) ଛଳରେ ପ୍ରକାଶିତ ହେବ ତାଙ୍କ ପ୍ରଶ୍ନ । କବି ଗଙ୍ଗାଧର ଦେବୀକୃପାରେ ଏ ବୃତ୍ତାନ୍ତ ଶ୍ରବଣ କଲାବେଳେ ହର୍ଷିତ ହୋଇ ମନେ ମନେ କହି ହେଉଥିଲେ "ଧନ୍ୟ ଧନ୍ୟ ଗୋ ଉତ୍କଳମାତ ! ସବୁ ଦେବଦେବୀ ହେଉଛନ୍ତି ତୋର ପବିତ୍ର କୋଳରେ ଜାତ ।"

ହଠାତ୍ କଳ୍ପନାର ପରଦାରେ ଅନ୍ୟ ଏକ ଦୃଶ୍ୟ ଦେଖି ପାରିଲେ କବି ଗଙ୍ଗାଧର ;

"ସହସା ଦିଶିଲା ବିରାଟ ମୂରତି ବିରାଜିତ ସମ୍ମୁଖରେ,
ରାଜରାଜେଶ୍ୱରୀ ବେଶେ ରଥପଦ ଗଦା ପଦ୍ମ କମ୍ବୁ ଧରେ ।"

ଏ ରାଜରାଜେଶ୍ୱରୀଙ୍କର ନୀଳ କେଶପାଶ ଦେଖି ମନେହେଲା ତାହା ବଙ୍ଗୋପସାଗରର ତରଙ୍ଗାୟିତ ଜଳରାଶି, ମୁକୁଟସ୍ଥାନୀୟ ଶୃଙ୍ଗ ଲିଙ୍ଗରାଜ ମନ୍ଦିର ନିକଟରେ କର୍ଣ୍ଣଭୂଷଣ ମଛୀକଡି ସମ ଶୋଭା ପାଉଥିଲା ଜଗନ୍ନାଥଙ୍କ ବଡ଼ ଦେଉଳ ଏବଂ କୋଣାର୍କର ସୂର୍ଯ୍ୟମନ୍ଦିର । ଚତୁର୍ଭୁଜା ମୂର୍ତ୍ତି । ଶଙ୍ଖ ( ଶଙ୍ଖ କ୍ଷେତ୍ର ପୁରୀ ), ଚକ୍ର ( ଚକ୍ରକ୍ଷେତ୍ର ଭୁବନେଶ୍ୱର ) ଗଦା ( ଗଦାକ୍ଷେତ୍ର ଯାଜପୁର ) ଏବଂ ପଦ୍ମ ( ପଦ୍ମକ୍ଷେତ୍ର କୋଣାର୍କ ) ଶୋଭା ପାଉଛି ସେହି ଭୁଜ ମାନଙ୍କରେ । ଦକ୍ଷିଣ ଭୁଜ ସଂପ୍ରସାରିତ ହୋଇଛି ବଙ୍ଗଭୂମି ଦିଗକୁ; ତେଣୁ ସେହି ବାହୁରେ ରହିଛି ବଙ୍ଗୀୟ ଭୂଷଣ ସବୁ; ଦକ୍ଷିଣ ଦିଗରେ ତୈଲଙ୍ଗ ପ୍ରଦେଶକୁ ପ୍ରସାରିତ ବାମବାହୁ ପରିଶୋଭିତ ହୋଇଛି ଦକ୍ଷିଣୀ ଅଳଂକାରରେ । ଏହି ବିରାଟ ମୂର୍ତ୍ତି ଦୃଷ୍ଟି ହେଲାବେଳେ କବି ଦେଖିଲେ ପାଦ-ଦେଶରେ ଲଗ୍ନା ଭୂଷଣ । ପାଦଦ୍ୱୟ ମଧ୍ୟପ୍ରଦେଶ ଆଡକୁ ରହିଥିବାରୁ ସେଠାରେ ଅଛି ମଧ୍ୟପ୍ରଦେଶୀ ଅଳଂକାର । ସମଗ୍ର କଟିଦେଶରେ ରହିଛି ମଞ୍ଜୁଳ ସ୍ୱର୍ଣ୍ଣ କଟିଦାମ, ବସ୍ତ୍ରର ଆବରଣ ମଧ୍ୟରୁ ପରିସ୍ଫୁଟ ହେଉଛି ଯାହାର ଉଜ୍ଜ୍ୱଳ ତେଜ । କବି-କଳ୍ପନାର ଏ ରାଜରାଜେଶ୍ୱରୀ ହିଁ କାବ୍ୟାରମ୍ଭ କାଳର ଉତ୍କଳଲକ୍ଷ୍ମୀ । ଭୌଗୋଳିକ ଓଡ଼ିଶାକୁ ମୂଳକରି ବଙ୍ଗ, ମଧ୍ୟପ୍ରଦେଶ ଏବଂ ମାନ୍ଦ୍ରାଜ ପ୍ରଦେଶରେ ସେତେବେଳେ ବିଚ୍ଛିନ୍ନ ହୋଇ ରହିଥିଲା ଅସହାୟ, ଓଡ଼ିଆଭାଷୀ ଲୋକଙ୍କ ମଧ୍ୟରେ ଓଡ଼ିଆ ସଂସ୍କୃତି । ସେ ସକଳ ବିଚ୍ଛିନ୍ନାଞ୍ଚଳର ଏକୀକୃତ ରୂପ ଏହି ରାଜାରାଜେଶ୍ୱରୀ । ମଧ୍ୟପ୍ରଦେଶୀଙ୍କ ଉଦ୍ୟମରେ ଓଡ଼ିଆ ଭାଷା ବିଲୋପ ଆତଙ୍କରେ କବି ଚିନ୍ତା କଲାବେଳେ ସମୁଦାୟ ଓଡ଼ିଆଭାଷୀ ଅଞ୍ଚଳର ସମ୍ମିଳିତ ଚିତ୍ର ପ୍ରଦର୍ଶନରେ

ତାକୁ କାବ୍ୟାକାରରେ କଳ୍ପନା କରିଥିଲେ ଉତ୍କଳଲକ୍ଷ୍ମୀ ରୂପେ । ଏହା ତାଙ୍କ ଜାତୀୟ-ଭାବ-ଚେତନାର ମହତ୍ତ୍ୱପୂର୍ଣ୍ଣ କାବ୍ୟରୂପ ।

କାବ୍ୟର ଅନ୍ତିମ ସ୍ତରରେ କବି କଳ୍ପନା କରିଛନ୍ତି ଏକ ମନୋହର ଅଭିଷେକ ଉତ୍ସବର ;—ଯେଉଁଠାରେ ଏହି ରାଜରାଜେଶ୍ୱରୀଙ୍କର ନୀରାଜନା ହେଉଥିଲା ରୀତି, ସାହିତ୍ୟ ମାଧ୍ୟମରେ । ରାଧାନାଥ ଥିଲେ ଏ ଲକ୍ଷ୍ମୀର ପୂଜକ । ଲଲଟେନ୍ଦୁ କେଶରୀ, ଅନଙ୍ଗଭୀମ ଦେବ ଓ ଲାଙ୍ଗୁଲା ନରସିଂହ ଦେବଙ୍କ କୀର୍ତ୍ତିଗାନ କରି ସେ ସ୍ତୋତ୍ର ପାଠ କରୁଥିଲେ ଗଡ଼ଜାତ ମଣ୍ଡଳରେ ଚୌହାଣ ଭୂପତିଙ୍କ କୀର୍ତ୍ତିର ଅନୁଲ୍ଲେଖ ଏକ ଅଭାବ ପରି ମନେ ହେଲା । ରାଧାନାଥଙ୍କ ସାହିତ୍ୟ ମଧ୍ୟରେ ଥିଲା ଦକ୍ଷିଣୀ ଶକ୍ତି; ତେଣୁ ତାଙ୍କ କବିତାରେ ସ୍ଥାନ ପାଇଥିବା ଜୟନ୍ତ, ସ୍ୱୈରଗଙ୍ଗ, ପୁରୁଷୋତ୍ତମ, ଯଯାତି ପ୍ରମୁଖ ଐତିହାସିକ ଚରିତ ସବୁ ତଥା ଉଷା, ଚନ୍ଦ୍ରଭାଗା, ନନ୍ଦିକା, ପଦ୍ମାବତୀ ପ୍ରମୁଖ ରମଣୀ-ମଣ୍ଡଳୀ ନବଜନ୍ମ ପାଇ ଏ ସମ୍ମିଳନୀରେ ସମବେତ ହେଲେ । ପୁରୁଷମାନେ ଆସିଥିଲେ ବିବିଧ ଉପହାର ଧରି ; ନାରୀମାନେ ଅର୍ଘ୍ୟଥାଳୀ ଧରି ଆସି ବନ୍ଦାପନା କଲେ । କିନ୍ତୁ ସେମାନଙ୍କ ମଧ୍ୟରେ ନ ଥିଲେ ବଳରାମ ଦେବ ଅଥବା କମଳକୁମାରୀ ଅଥବା ପଶ୍ଚିମ ଓଡ଼ିଶାର ଚୌହାଣ ବୀର ରମାଇଦେବଙ୍କ ବଂଶଧର-ମାନେ । ପୁନଶ୍ଚ ଆସିଲେ ମେଘାସନ, ଗନ୍ଧମାଦନ, ଗୋନାସା ପ୍ରଭୃତି ଶିଖରୀ; ମନ୍ତ୍ର ବଳରେ ଅଦ୍ଭୁତ ହୋଇ ଉପସ୍ଥିତ ହେଲେ ସେନାନୀ ରୂପେ ମାଲ୍ୟଗିରି, ହସ୍ତିଶଯ୍ୟା, କପିଳାସ, ମହେନ୍ଦ୍ର, ମଣିଭଦ୍ରା, ଭାଟଲସା, ସୋନକସା, ଜାଲୀଜାଣ୍ଡ । ଉତ୍ସାହିତ ମଧ୍ୟରେ ନାମୋଲ୍ଲେଖ ନ ଥିବାରୁ ଆହୁରି କେତେ ସୁଦୃଙ୍ଗ ପର୍ବତ ଶ୍ରେଣୀ ନମାଇଁ, ବଙ୍କାଶ୍ୟାମ, ଚିକଣଗୁଡ଼ା, ଗନ୍ଧମାର୍ଦ୍ଦନ, ମାଙ୍କଡନସ୍ତ ଇତ୍ୟାଦି ଆପଣା ଉପତ୍ୟକାନ ହାତରେ ଧରି ଅପେକ୍ଷା କରି ରହିଲେ ପଛ ପଛ ଧାଡ଼ିରେ—ଅଖ୍ୟାତନାମାର ଅଗୌରବ ନେଇ । ନବୀନା ସାଜ ଆସିଲେ ତରଙ୍ଗିଣୀ ବର୍ଗ—ମହାନଦୀ, ବ୍ରାହ୍ମଣୀ, ବୈତରଣୀ ସୁବର୍ଣ୍ଣରେଖା, ଦୟା, ଭାର୍ଗବୀ, ସାଲଆ, ମନ୍ଦାକିନୀ ପ୍ରଭୃତି ଘୋଷରେ ଝଙ୍କି ତୀରଭୂମିର କୁସୁମସ୍ତବକ । ନୃତ୍ୟପ୍ରଦର୍ଶନର ସୁଯୋଗ ନ ପାଇ କ୍ଷୁବ୍ଧ ହେଲେ ଆହୁରି କେତେ ତଟିନୀ—ଅଙ୍ଗ, ତେଲ, ଇବ୍, ଜିରା, ଦନ୍ତା ପ୍ରମୁଖ । ଜଳପ୍ରପାତ-ମାନଙ୍କ ପୂତ ତୀର୍ଥବାରୀରେ ହେଲା ଲକ୍ଷ୍ମୀଙ୍କର ଅଭିଷେକ; ଅଗଣିତ ଦେବଦେବୀଙ୍କ ମଧ୍ୟରେ ହସ୍ତିମାତୃକା, ସମଲେଇ, ପଦ୍ମାସନୀ, ଚନ୍ଦ୍ରାସନୀ, କେଦାରନାଥ ପ୍ରମୁଖ ଯେ ଅଭିଷେକୋତ୍ସବରେ ଯୋଗଦେଲେ । ଅଶୋକ, ପାରଶ୍ୱନାଥ, ବୈଷ୍ଣବ, ବୌଦ୍ଧ, ଜୈନ ପ୍ରଭୃତି ଧର୍ମାଚାର୍ଯ୍ୟ କଲେ ଲକ୍ଷ୍ମୀଙ୍କ ଜୟଧ୍ୱନି । ଏ ମହା-

ମହୋତ୍ସବର ଏକ ମହନୀୟ ଦୃଶ୍ୟ ଥିଲା ଧାଡ଼ି ଧାଡ଼ି କୀର୍ତ୍ତି-ରଥ । ଏଥିରେ ସମାସୀନ ଥିଲେ ଜଗନ୍ନାଥ ଦାସ—ବଳରାମ ଦାସ—କୃଷ୍ଣଚରଣ—ସାରଳା ଦାସ—କୃଷ୍ଣସିଂହ—ଉପେନ୍ଦ୍ର—ଦୀନକୃଷ୍ଣ—ଅଭିମନ୍ୟୁ ପ୍ରମୁଖ ମୃତ୍ୟୁଞ୍ଜୟ କବିବର୍ଗଙ୍କ ସହିତ ଆହୁରି କେତେ ଅଖ୍ୟାତନାମା ସାହିତ୍ୟସାଧକ । ଅପୂର୍ବ ଆନନ୍ଦରେ ଉଲ୍ଲସିତ ଗଙ୍ଗାଧରଙ୍କ ଚକ୍ଷୁ ଆନନ୍ଦାଶ୍ରୁ ପ୍ଲାବିତ ହେଲା ; ଝରିପଡ଼ୁଥିବା ଆନନ୍ଦ-ଲୋତକ-ଧାରାରେ ନିମଜ୍ଜିତ ହେଲା କବିର ସମସ୍ତ ସତ୍ତା ।

## ରାଜରାଜେଶ୍ୱରୀ କଳ୍ପନାର ବିଶ୍ଳେଷଣ :

'ଉତ୍କଳଲକ୍ଷ୍ମୀ' କାବ୍ୟର ଏହି ବିଷୟବସ୍ତୁର ବିନ୍ୟାସରେ ଉତ୍କଳର ପ୍ରକୃତି ଓ କୀର୍ତ୍ତି ପ୍ରତି କବି ଯେଉଁ ଗଭୀର ଆରୋପ କରିଛନ୍ତି ତାହାର ବୈଶିଷ୍ଟ୍ୟ ହେଉଛି ସେହି ରାଜରାଜେଶ୍ୱରୀ କଳ୍ପନାର ଭୂମିକା । ଭାଷା ସଂସ୍କୃତିର ପିଣ୍ଡ ଉପରେ ଆଧାରିତ ଏହି ରାଜରାଜେଶ୍ୱରୀଙ୍କର ଆପାଦମସ୍ତକବ୍ୟାପୀ ବିସ୍ତୃତ ପ୍ରାକୃତିକ ଶୋଭା-ସମ୍ଭାର ଓ କୀର୍ତ୍ତିରାଜି ହେଉଛି କବିଙ୍କର ଉପଜୀବ୍ୟ, ଯାହାଫଳରେ ଭାଷାଭିତ୍ତିକ ଓଡ଼ିଶାର ଏକ ସାମୂହିକ ଚେତନା ତଥା ଅବଧାରଣ ସମ୍ଭବ ହେବ । ପୁରୀ, କଟକ, ବାଲେଶ୍ୱର ସେତେବେଳେ ଥିଲା ରାଜନୈତିକ ଓଡ଼ିଶା; କିନ୍ତୁ ସାଂସ୍କୃତିକ ଓଡ଼ିଶା ବ୍ୟାପିଯାଇଥିଲା ଉତ୍ତର-ପୂର୍ବରେ ମେଦିନୀପୁର, ପଶ୍ଚିମରେ ଫୁଲଝର ଏବଂ ଦକ୍ଷିଣରେ ବିଜୟନଗର ପର୍ଯ୍ୟନ୍ତ । ଏ ସାମଗ୍ରିକ ଚେତନାର କାବ୍ୟିକ ରୂପାୟନ ହେଉଛି 'ଉତ୍କଳଲକ୍ଷ୍ମୀ' । କିନ୍ତୁ ରାଜନୈତିକ ସୀମାଚିହ୍ନିତ ଓଡ଼ିଶାର ଖଣ୍ଡିତ ରୂପଥିଲା ଓଡ଼ିଶାର ପରିଚୟ । ଦୁର୍ଭାଗ୍ୟବଶତଃ ମହାଶକ୍ତିଧର କାବ୍ୟଭାରର ଅବତାର କବି ରାଧାନାଥ ଆପଣାର ସାହିତ୍ୟରେ ଯେଉଁ ଉତ୍କଳ ପ୍ରକୃତିର ଜୟଗାନ କଲେ ତାହା ମଧ୍ୟ ସୀମିତ ରହିଲା ମୋଟାମୋଟି ସେହି ରାଜନୈତିକ ସୀମା ମଧ୍ୟରେ । ତେଣୁ ରାଧାନାଥ ନିଜ ବର୍ଣ୍ଣନାରେ କେବଳ ମସ୍ତକ ଓ ବକ୍ଷଦେଶରେ ବର୍ଣ୍ଣନା-ନୀରାଜନା କଲେ । ଅଖ୍ୟାତ ଉପେକ୍ଷିତ ରହିଲା କଟି-ଦେଶ ଓ ତାହାର ନିମ୍ନାଂଶ ସହିତ ଉଭୟ ବାମ ଦକ୍ଷିଣ ହସ୍ତର ଶୋଭା । କବି ଗଙ୍ଗାଧର ଏ ଅଭାବ ଦେଖି କ୍ଷୁବ୍ଧ ହୋଇଛନ୍ତି । ରାଧାନାଥଙ୍କୁ ବହୁମାନ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ତାଙ୍କ ସାହିତ୍ୟରେ ଏ ଅଭାବ ପ୍ରତି ଆକ୍ଷେପର ଅଙ୍ଗୁଳି ନିର୍ଦ୍ଦେଶ କରି ତାହାର ବର୍ତ୍ତମାନ ପରିଚୟ ଦେଇ ଧାରଣାର ପୂର୍ଣ୍ଣତା ଆନୟନ ପାଇଁ ଉଦ୍ୟମ କରିଛନ୍ତି । ଏ କାବ୍ୟରେ ରାଧାନାଥଙ୍କ ପ୍ରତିଭା ଓ ସୃଷ୍ଟିର ଅକୁଣ୍ଠ ବନ୍ଦନା ଗଙ୍ଗାଧରଙ୍କ ରଚନାରେ ପ୍ରତିପାଦିତ; କିନ୍ତୁ ସମଗ୍ର ଉତ୍କଳ-ଲକ୍ଷ୍ମୀ କଳ୍ପନାର ବିସ୍ତାର କ୍ଷେତ୍ରରେ ରାଧାନାଥ-ବନ୍ଦନା ତଥା ରାଧାନାଥଙ୍କ ପ୍ରତି ଆକ୍ଷେପର ଯେଉଁ ଉପଯୋଗ କରାଯାଇଛି ତାହା ଏକ ଦିଗରେ ଗଙ୍ଗାଧରଙ୍କ ଜାତୀୟ-ଭାବ-ଚେତନାର

ଭଙ୍ଗିମ ବଳାଇଛି; ଅପର ଦଗରେ ତାଙ୍କ ପ୍ରତଭାର ମହମାସ୍ତ ସୃଜନୀ-ଶକ୍ତିକୁ ପ୍ରମାଣିତ କରୁଛି ।

ରାଧାନାଥଙ୍କ ପ୍ରଭାବ ଓ ଗଙ୍ଗାଧରଙ୍କ ମୌଳିକତା :

ଏଠାରେ ଦ୍ରଷ୍ଟବ୍ୟ ଯେ 'ଉତ୍କଳଲକ୍ଷ୍ମୀ'ର କାବ୍ୟଶୈଳୀରେ ରାଧାନାଥୀ ଧାରା ସ୍ପଷ୍ଟଭାବେ ଦୃଶ୍ୟମାନ । ବର୍ଣ୍ଣନାର ପ୍ରକୃତ, କଳ୍ପନାର ଗତ, ଚରଣ ପର-ବେଷଣର ପ୍ରଣାଳୀ ଏବଂ ପଦବିନ୍ୟାସର କୌଶଳ ସବୁଠି ରାଧାନାଥ-ସରଣୀର ମୁଦ୍ରାଙ୍କ ସ୍ପଷ୍ଟ । ଗଙ୍ଗାଧର ରାଧାନାଥଙ୍କ କବିତାର ଗ୍ରାହକ ମାତ୍ର ନଥିଲେ, ରାଧାନାଥ ଥିଲେ ତାଙ୍କ କବିତା ଶିକ୍ଷାର ବିଦ୍ୟାଳୟ, ଏପରିକ ରାଧାନାଥଙ୍କୁ 'ଅହଲ୍ୟାସ୍ତବ' ଓ ଇନ୍ଦୁମତୀ'ର ପାଣ୍ଡୁଲିପି ପର୍ଯ୍ୟନ୍ତ ଦେଖାଇ ସୂଚନା ଗ୍ରହଣ କରିବାଦ୍ୱାରା ଅଗ୍ରଜ ରାଧାନାଥଙ୍କୁ ଗଙ୍ଗାଧର ତାଙ୍କ ଗୁରୁର ସ୍ୱୀକୃତ ଦେଇ ଏହି କାର୍ଯ୍ୟରେ ତାଙ୍କୁ ସୁପ୍ରତଷ୍ଠିତ କରିଯାଇଛନ୍ତି । ତଥାପି ଏହା ସତ୍ୟ ଯେ ଉତ୍କଳଲକ୍ଷ୍ମୀର ପରିକଳ୍ପନା ଗଙ୍ଗାଧରଙ୍କର ସମ୍ପୂର୍ଣ୍ଣ ନଜସ୍ୱ । ପୁରାଣ-ଇତହାସରେ ବା ତାଙ୍କ ପୂର୍ବସୂରଙ୍କ କାବ୍ୟ ସମ୍ଭାରରେ କୁତ୍ରାପି ନ ଥିଲା ଏ ରାଜ-ରାଜେଶ୍ୱରୀ ଉତ୍କଳଲକ୍ଷ୍ମୀର କଳ୍ପନା । ବିଶେଷତଃ ପଶ୍ଚିମ ଓଡ଼ିଶାରେ ଓଡ଼ିଆ ଭାଷା ବିଲୋପ ପରପ୍ରେକ୍ଷୀରେ ଏ କଳ୍ପନା କବିଙ୍କ ମହତ୍ତ୍ୱପୂର୍ଣ୍ଣ ଜାତୀୟତାବାଦ ଚେତନାର ଅମର ସ୍ମାରକୀ । ଓଡ଼ିଆ ଭାଷା ଓ ସଂସ୍କୃତର ଆଧାରରେ ରାଜନୈତକ ଓଡ଼ିଶାର ନୂତନ ଚିତ୍ର ଅଙ୍କନ କଲେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ନମିତ୍ତ ଆନ୍ଦୋଳନାତ୍ମକ କାର୍ଯ୍ୟାରମ୍ଭ ହେଲା ୧୯୦୩ ଡ଼ିସେମ୍ବରରେ ଉତ୍କଳ ସମ୍ମିଳନୀ ମାଧ୍ୟମରେ । ତାର ପ୍ରାୟ ଏକ ଦଶନ୍ଧି ପୂର୍ବରୁ କବି ଗଙ୍ଗାଧରଙ୍କ ମାନସପଟରେ ଓଡ଼ିଶାର ସାଂସ୍କୃତକ ମାନଚିତ୍ର ଅଙ୍କିତ ହୋଇଥିଲା । ଏହା ହିଁ ସେହି ଯୁଗ-ସଚେତନ କବିଙ୍କର ସ୍ୱାତନ୍ତ୍ର୍ୟ ଏବଂ ସେଥିଯୋଗୁଁ 'ଉତ୍କଳଲକ୍ଷ୍ମୀ' କାବ୍ୟକୁ ଆଧୁନକ ଓଡ଼ିଶାର ଜାତୀୟତା ବିଷୟରେ ପ୍ରଥମ କାବ୍ୟର ଗୌରବ ଦେବା ଅସମୀଚୀନ ହେବ ନାହିଁ ।

କାବ୍ୟ ଓ କୋଡ଼ିଏ ବର୍ଷର ବ୍ୟବଧାନ :

ପ୍ରଥମେ ସୂଚତ ହୋଇଛି ଯେ 'ଉତ୍କଳଲକ୍ଷ୍ମୀ'ର ଅର୍ଦ୍ଧେକ ପ୍ରକାଶିତ ହୋଇଥିଲା ୧୮୯୪ରେ । କବି ରାଧାନାଥ ଏହାର ପ୍ରଶଂସା କରିଥିଲେ । କିନ୍ତୁ ବର୍ଷାଧିକ କାଳପରେ 'ସମ୍ବଲପୁର ହିତୈଷିଣୀ' ଏହାକୁ ଅସଂପୂର୍ଣ୍ଣ କାବ୍ୟ ବୋଲି ଦର୍ଶାଇ ମନ୍ତବ୍ୟ ଦେଇଥିଲେ ଯେ ଏହା ଏକ "ଅକାଳ୍ପିତକର କାବ୍ୟ" । ଇନ୍ଦୁମତୀର ବହୁ ପ୍ରଶଂସିତ କବି ଗଙ୍ଗାଧର ଏ କଠୋର ମନ୍ତବ୍ୟରେ ଅବଶ୍ୟ ଆହତ

ହୋଇଥିବେ ଏବଂ ଗ୍ରାହକତା ଅଭାବରେ ଏହାକୁ ସଂପୂର୍ଣ୍ଣ କରିବା ଲାଗି ମନ ବଳାଇ ନ ଥିବେ । ଦୀର୍ଘ ୨୦ ବର୍ଷ ପରେ ୧୯୧୪ରେ ଏହାକୁ ସଂପୂର୍ଣ୍ଣ କରିବା ମୂଳରେ କବି-ବନ୍ଧୁ ବ୍ରଜମୋହନ ପଣ୍ଡାଙ୍କ ପ୍ରେରଣା ଓ ଉତ୍ସାହ ହିଁ ଦାୟୀ । ସେହେତୁ ତାଙ୍କ ଚିଠିପତ୍ରରେ ଏ ବିଷୟରେ ଯାହା ଲିପିବଦ୍ଧ କରି ଯାଇଛନ୍ତି ତହିଁରୁ ଜଣାପଡ଼େ ସେ ଏହାକୁ ପୂର୍ଣ୍ଣ କଲାବେଳେ ଗଡ଼ଜାତ ଓ ପଶ୍ଚିମ ଓଡ଼ିଶାର ପ୍ରକୃତି ବନ୍ଦନା କରି ସତେ ଅବା ରାଧାନାଥଙ୍କ ପ୍ରକୃତି ଚିତ୍ରଣର ପରିପୂରକ କରି ଗଢ଼ିବାକୁ ମନସ୍ଥ କରିଥିଲେ । କିନ୍ତୁ ସମସ୍ତ ପଶ୍ଚିମ ପ୍ରକୃତି ସହ ନିବିଡ଼ ପରିଚୟ ଅଭାବରେ ଲେଖା ନୀରସ ହେବାକୁ ସେ ଧାରା ପରିତ୍ୟାଗ କରି ତାଙ୍କ କଳ୍ପନା ବଳରେ ରାଜରାଜେଶ୍ୱରୀ ମୂର୍ତ୍ତି ଉଦ୍ଭାବନ କଲେ । ଏହି କଳ୍ପନାରେ ତାଙ୍କ ଅନ୍ତରର ଉଲ୍ଲାସ ମଧ୍ୟ ଅତି ସ୍ପଷ୍ଟ ଭାବେ ପ୍ରକାଶ ପାଇଛି ତାଙ୍କ ନିଜ ମନ୍ତବ୍ୟରେ । ସେ ଗୋଟିଏ ପତ୍ରରେ ଏହାକୁ ସ୍ୱୟଂ ଏକ "ନୂତନ ମାର୍ଗ" ବୋଲି ଅଭିହିତ କରିଛନ୍ତି । "ଜୟ ଗୋ ଉତ୍କଳ ଲକ୍ଷ୍ମୀ" ବନ୍ଦନାର ଉତ୍କଳ ଲକ୍ଷ୍ମୀ ରାଜରାଜେଶ୍ୱରୀ ହୋଇ ବନ୍ଦିତ ହେବାରେ ତାଙ୍କ କାବ୍ୟର ଭାବ-ସଙ୍ଗତି ସୁରକ୍ଷିତ ହୋଇଛି । ପୁନଶ୍ଚ ପ୍ରଥମାର୍ଦ୍ଧରେ ରାଧାନାଥଙ୍କୁ କାବ୍ୟକର୍ତ୍ତା ରୂପେ ସେ ଜନ୍ମ ଦେଇଥିଲେ; ମାତ୍ର ଦ୍ୱିତୀୟାର୍ଦ୍ଧରେ ତାଙ୍କ କବି-କର୍ମର ଏକ ସମୀକ୍ଷାତ୍ମକ ପରିଚୟ ଦେବାରେ ଶିଳ୍ପ-ସୌନ୍ଦର୍ଯ୍ୟ ସମ୍ପୂର୍ଣ୍ଣ ହୋଇଛି । ୨୦ ବର୍ଷର ବ୍ୟବଧାନ ସତ୍ତ୍ୱେ ଉଭୟ ଅଂଶର ଏହି ଶିଳ୍ପସଙ୍ଗତ ରୂପ ସମ୍ଭବ ହୋଇଛି ଗଙ୍ଗାଧରଙ୍କ ଜାତୀୟଭାବ, ଚେତନାର ସ୍ୱାଭାବିକତା ଏବଂ ବଳିଷ୍ଠତା ଯୋଗୁଁ ।

## ଏହି ପର୍ବର ସଂଶ୍ଳେଷଣ :

ସ୍ଥୂଳତଃ ଗଙ୍ଗାଧରଙ୍କ କବି-ପ୍ରତିଭାର ଉନ୍ମେଷ ପର୍ବରେ ଆମେ ପାଉଛୁଁ ଚାରୋଟି କାବ୍ୟ : ରସରତ୍ନାକର, ଅହଲ୍ୟାସ୍ତବ, ଇନ୍ଦୁମତୀ ଓ ଉତ୍କଳଲକ୍ଷ୍ମୀ । ପୂର୍ବୋକ୍ତ ଆଲୋଚନାରେ ଦର୍ଶାଇ ଦିଆଯାଇଛି ଯେ ଏ ମଧ୍ୟରୁ ପ୍ରତ୍ୟେକ ରଚନା ଏକ ସ୍ୱତନ୍ତ୍ର ପରୀକ୍ଷା (experiment)ର ଫଳ । 'ରସରତ୍ନାକର'ରେ କବି ଲେଖିଲେ ରୀତିଶୈଳୀର କାବ୍ୟ; ଏହା ଆମର ପାରଂପରିକ ଧାରାର କାବ୍ୟ—ରସ ଓ ରୀତି ଉଭୟର ସରଳୀକୃତ ପ୍ରୟୋଗ । କିନ୍ତୁ ଯୁଗ-ସ୍ପନ୍ଦନର ପ୍ରକୃତି ଉପଲବ୍ଧି କରି ପାରିବାରୁ ଏ ଧାରା ବର୍ଜନ କଲେ । 'ଅହଲ୍ୟାସ୍ତବ' ର ଭାବରେ ଥିଲି ଓଡ଼ିଆ କବିତାର ପ୍ରାଣ ; କିନ୍ତୁ ଏହାର ଛନ୍ଦରେ ନବ ପ୍ରୟୋଗ କଲେ ସଂସ୍କୃତ ବୃତ୍ତ । ରାଧାନାଥଙ୍କ ପ୍ରତିକୂଳ ମନ୍ତବ୍ୟରୁ ଗ୍ରାହକ-ରୁଚିର ସଙ୍କେତ ପାଇ ଗଙ୍ଗାଧର ସେହି ମାର୍ଗ ପରିହାର କଲେ । ଏ ସମୟର ଜନ-ରୁଚିରେ ଆଦର ପାଉଥିଲା ରାଧାନାଥ-ଶୈଳୀର ପାଣ୍ଡିତ୍ୟପୂର୍ଣ୍ଣ ପଦବିନ୍ୟାସ ଓ ସରଳୀକୃତ ଅଳଙ୍କାର

ପ୍ରୟୋଗ ମଧ୍ୟରେ ପ୍ରେମାଖ୍ୟାନ ବସ୍ତୁର ଚମତ୍କାରିତାପୂର୍ଣ୍ଣ ପରିବେଷଣ ; କିନ୍ତୁ ସମାଲୋଚିତ ହୋଇଥିଲା ଅସାମାଜିକ ନୀତି-ଗର୍ହିତ ପ୍ରେମଚିତ୍ର । ସୂକ୍ଷ୍ମଦର୍ଶୀ ଗଙ୍ଗାଧର ଏହି ଅବବୋଧ ଉପରେ ରଚନା କଲେ ରଘୁବଂଶ ଅନୁସରଣରେ ତାଙ୍କର ତୃତୀୟ କାବ୍ୟ 'ଇନ୍ଦୁମତୀ' । ଏହାର ପ୍ରଶଂସା ଏକ ପ୍ରକାର ତାଙ୍କ କାବ୍ୟ-ଶୈଳୀର ଧାରା ନିରୂପଣ କରିଦେଲା । 'ଉତ୍କଳଲକ୍ଷ୍ମୀ' କାବ୍ୟ ହେଉଛି ଚତୁର୍ଥ ପରୀକ୍ଷା । ଏଥିରେ ଥିଲା 'ଇନ୍ଦୁମତୀ'ର ଶୈଳୀ, ନ ଥିଲା ପ୍ରେମଚିତ୍ର, ଥିଲା ଏକ ମୌଳିକ "ନୂତନ ମାର୍ଗ" । ଏ ନୂତନ ମାର୍ଗର ଅନୁଭବକୁ ଅପୂର୍ଣ୍ଣ ଅବସ୍ଥାରେ ୧୮୯୪ରେ ପ୍ରକାଶ କରିବାକୁ କାହିଁକି ଗଙ୍ଗାଧର ଅନୁମତି ଦେଇଥିଲେ ତାହା ଅଜ୍ଞାତ ରହିଗଲା । ଏହାର ଫଳ ହେଲା 'ହିତୈଷିଣୀ' ଙ୍କ କଟୁ ସମାଲୋଚନା । କବି ପ୍ରତିଭାର ସ୍ୱଚ୍ଛନ୍ଦ ଗତି ଏହାଦ୍ୱାରା ବ୍ୟାହତ ହେଲା ବୋଲି ମନେହୁଏ ।

ସେ ଯାହାହେଉ ଏ ସକଳ ପରୀକ୍ଷା ନିରୀକ୍ଷା ମଧ୍ୟରେ କବିପ୍ରତିଷ୍ଠାକାମୀ ଗଙ୍ଗାଧରଙ୍କ କବି-କର୍ମର ଯେଉଁ ବିବର୍ତ୍ତନ ଦେଖିବାକୁ ମିଳେ ତାହା ତାଙ୍କ ଆଦ୍ୟ ଜୀବନର ସାଧକ ପ୍ରକୃତିର ରୂପାୟନ । ସ୍ତରେ ସ୍ତରେ ସେ ସଚେତନ ହୋଇଛନ୍ତି ନିଜ ଶକ୍ତି ତଥା ପାଠକରୁଚି ବିଷୟରେ ଏବଂ ସେହି ବର୍ଦ୍ଧିଷ୍ଣୁ ଆତ୍ମବିଶ୍ୱାସ ହୋଇଯାଇଛି ତାଙ୍କ କାବ୍ୟର ନୂତନ ପ୍ରୟୋଗ କରିବା ନିମିତ୍ତ ଏକ ପ୍ରେରଣାଭୂମି । ତାଙ୍କ ପରବର୍ତ୍ତୀ କାବ୍ୟ କବିତାରେ ଏହାର ପ୍ରମାଣ ତଥା ଦୃଷ୍ଟାନ୍ତ ଅତ୍ୟନ୍ତ ସୁଲଭ ।



# ତୃତୀୟ ପରିଚ୍ଛେଦ

# ସିଦ୍ଧାନ୍ତ ପର୍ବ

**୧୮୯୫-୧୯୦୨ :**

ସଂସାରୀ ଗଙ୍ଗାଧରଙ୍କ ଜୀବନରେ ଏହି ସାତୋଟି ବର୍ଷ ସବୁଠାରୁ ଘଟଣା-ବହୁଳ ମନେହୁଏ । ଏ ସମୟରେ କବି ସୁଖଦୁଃଖର କେତେଗୁଡ଼ିଏ ସ୍ମରଣୀୟ ଅନୁଭୂତିର ଶରବ୍ୟ ହୋଇଥିଲେ । ୧୮୯୬ରେ ତାଙ୍କ ପତ୍ନୀ ଶାନ୍ତାଙ୍କର ବିୟୋଗ ଏବଂ ବରପାଲି ଜମିଦାରୀରେ ତାଙ୍କର ୫୧୫ ବେତନରେ ମାଲମୋହରର ନିଯୁକ୍ତି, ୧୮୯୮ରେ ଦ୍ୱିତୀୟବାର ବିବାହ ଏବଂ ନିଜ ସଞ୍ଚିତ ଅର୍ଥ ବିନିମୟରେ ବରପାଲିରେ ୫୦ ଏକର ଜମିକ୍ରୟ, ୧୮୯୯ରେ ସରକାରୀ ଜୁଡ଼ିସିଏଲ ମୋହରର ସ୍ୱୀକୃତି ପ୍ରାପ୍ତି ସହିତ ଘରୋଇ ଭାବେ ମାଲମୋହରର ଦାୟିତ୍ୱ ବହନ ତାଙ୍କ ଜୀବନକୁ ନାନା ଜଞ୍ଜାଳରେ ଆନ୍ଦୋଳିତ କରିଥିବ । ୧୯୦୧ରେ ସମ୍ବଲପୁର ବଦଳି ପରେ ପରେ ୧୯୦୨ ଜାନୁଆରୀରେ ପିତା ଚୈତନ୍ୟ ମେହେରଙ୍କ ମୃତ୍ୟୁ ଘଟିଲା । ତା'ପରେ ବଡ଼ପୁଅ ଅର୍ଜୁନର ବିବାହ ଏବଂ ପ୍ରାୟ ଛଅମାସ ପରେ ସେହି ୧୯୦୨ ଜୁଲାଇରେ ତାଙ୍କ ଜୀବନର ସବୁଠାରୁ ଦୁଃଖାବହ ଘଟଣା ଘଟିଲା—ଅର୍ଜୁନର ମୃତ୍ୟୁ । ସେତେବେଳେ ଦ୍ୱିତୀୟ ପୁତ୍ର ଭଗବାନଙ୍କ ବୟସ ମାତ୍ର ଦଶବର୍ଷ । ସଙ୍ଗତି ସ୍ୱଳ୍ପ; ଏକାକୀ ନିଜ ଉଦ୍ୟମରେ ଜୀବନ ଗଠନରେ ଲାଗି ପଡ଼ିଥିବା ଏହି ମଣିଷଟି କିପରି କାର୍ଯ୍ୟବ୍ୟସ୍ତ ହୋଇ ପଡ଼ିଥିବେ ଏହା ଅନୁମାନ କରିବା ଆଦୌ କଷ୍ଟକର ନୁହେଁ ।

ଜୀବନ ଅବସ୍ଥାର ଏ ପ୍ରତିକୂଳତା କବିତା-କଳ୍ପନାର ସହାୟକ ନୁହେଁ । ତଥାପି ଏହି ସମୟ ମଧ୍ୟରେ ତାଙ୍କଠାରୁ ମିଳିଛି 'ମହିମା'—ବଙ୍ଗଳାଶ୍ରୀ ବୃତ୍ତରେ ରଚିତ ୫୦ଟି ପଦର ସମାହାର । ଏଥିରେ ଗଳ୍ପ ବା ଚରିତ୍ର ନାହିଁ । ଜୀବନର ବିବିଧ କ୍ଷେତ୍ରରେ ଯୁଗେ ଯୁଗେ ଯାହା ମହତ୍ତ୍ୱପୂର୍ଣ୍ଣ ବୋଲି ନୀତି-ସମ୍ମତ ହୋଇଛି ତାହାର କାବ୍ୟିକ ପରିବେଷଣ ପ୍ରସଙ୍ଗରେ ଚମତ୍କାର ଦୃଷ୍ଟାନ୍ତ ଗୁଡ଼ିଏ ଗ୍ରଥିତ ହୋଇଛି । ଏଥିରୁ ଅନେକ ଦୃଷ୍ଟାନ୍ତ କାବ୍ୟଶାସ୍ତ୍ରରେ ରହିଛି କିନ୍ତୁ ସେହି

ପୂର୍ବପଠିତ ଦୃଷ୍ଟାନ୍ତ ସବୁର ରୂପାୟନରେ କବିଙ୍କ ପଦଯୋଜନାର ବୈଶିଷ୍ଟ୍ୟ ସେଗୁଡ଼ିକୁ ପୁଣି ଦେଇଛି ନୂତନ ସ୍ୱାଦ । ଏହାର ଅନ୍ୟ ଏକ ବୈଶିଷ୍ଟ୍ୟ ହେଲି ଏଥିରେ ସନ୍ନିବେଶିତ କବିଙ୍କ ନିଜ ପରିବେଶ ଓ ଅନୁଭବର ଚିହ୍ନ । "ହିମାଚଳେ ମିଳେ ଶ୍ୱେତ ଗଜରାଜ ବାରିପାହାଡ଼େ ଶୂକର", "ସୂର୍ଯ୍ୟ କହୁଁ ବଳ କେତେ ତାପ ଦିଏ ସୂର୍ଯ୍ୟକର-ଉତ୍ତପ୍ତ ବାଲି"; "ମହତ କୌଶଳେ ଦାସୀ କାର୍ଯ୍ୟ କରେ ବିଦ୍ୟୁତ ଜଗତ ଲାଗି"; "ନଷ୍ଟ କୁସୁମର ବାସ ହୋଇଥାଏ ଅତରେ ଅଧିକତର"— ଏଗୁଡ଼ିକ ତାହା ମଧ୍ୟରୁ କେତୋଟି ମନୋହର ଉଦାହରଣ । ଏହାଛଡ଼ା ସାହସ, ମହତ୍ତ୍ୱ ପ୍ରକୃତି, ଧର୍ମ, ଈଶ୍ୱରଭକ୍ତି ପ୍ରଭୃତି ପ୍ରସଙ୍ଗରେ ରଚିତ ୨୧୪ଟି ଲେଖାର୍ଦ୍ଧ ପଦ ପ୍ରକୃତରେ ପ୍ରତ୍ୟେକ ବ୍ୟକ୍ତିର କଣ୍ଠାଭରଣ ହେବାର ଯୋଗ୍ୟ ।

'ମହିମା' ବ୍ୟତୀତ ଏହି ସମୟ ମଧ୍ୟରେ ପ୍ରକାଶିତ ଅପର କବିତା ହେଲି 'ବର୍ଷାଚିହ୍ନ' (୧୯୦୨ ଜୁନ୍) । ଈଷତ୍ ଦୀର୍ଘ କବିତାଟିଏ—ବର୍ଷାକାଳର ବାସ୍ତବ ଦୃଶ୍ୟର ସ୍ୱଚ୍ଛବୋଧ୍ୟ ସାବଲୀଳ ବର୍ଣ୍ଣନା । 'ବ ଭେଦ', 'ର ରୁ ଭେଦ' ଏ ସମୟର ଦୁଇଟି ଗଦ୍ୟରଚନା । ଓଡ଼ିଆ ଭାଷାର ସ୍ୱରୂପ ନିର୍ଦ୍ଧାରଣ ପ୍ରସଙ୍ଗରେ ଏ ଆଲୋଚନାର ଉପାଦେୟତା ସ୍ୱୀକାର୍ଯ୍ୟ । ସମ୍ବଲପୁରର ଭାଷା ଆନ୍ଦୋଳନରୁ ଏ ରଚନାର ପ୍ରେରଣା ଆସିଥିବା ସମ୍ଭବ ।

'ବଳରାମ ଦେବ', 'ଆମୋଦ', 'ତରୁବର' ଓ 'ପୁଷ୍କରିଣୀ' ଏହି ସମୟରେ ପ୍ରକାଶିତ ଚାରୋଟି ସାନବଡ଼ କବିତା । ବରପାଲି ଜମିଦାର ଲାଲ ନୃପରାଜ ସିଂହଙ୍କ ନାମରେ ଏ କବିତା ସବୁ 'ସମ୍ବଲପୁର ହିତୈଷିଣୀ' ଏବଂ 'ଉତ୍କଳ ସାହିତ୍ୟ' ପତ୍ରିକାମାନଙ୍କରେ ମୁଦ୍ରିତ ହୋଇଥିଲା । କିନ୍ତୁ ଏ ସବୁର ଭାବଧାରା, ଭାଷାଶୈଳୀ ତଥା ବର୍ଣ୍ଣନାଭଙ୍ଗୀ ଦେଖି କବି ରାଧାନାଥ, ନନ୍ଦକିଶୋର ସମସାମୟିକ କାଳରେ ଯଥାର୍ଥ ଅନୁମାନ କରିଥିଲେ ଯେ ଏ ଗୁଡ଼ିକ ଗଙ୍ଗାଧର ସ୍ୱୟଂ ରଚନା କରି ତାଙ୍କର ପୃଷ୍ଠପୋଷକ ଜମିଦାରଙ୍କ ନାମରେ ଉକ୍ତିକାବ୍ୟ ରୂପେ ଛପାଇବାକୁ ଦେଇଥିଲେ । ସେମାନଙ୍କ ପତ୍ରର ଉତ୍ତରରେ କବି ଗଙ୍ଗାଧର ମଧ୍ୟ ତାହା ସ୍ୱୀକାର କରିଥିଲେ । ଗଙ୍ଗାଧରଙ୍କ ନିକଟକୁ ରାଧାନାଥ, ନନ୍ଦକିଶୋର ପ୍ରଭୃତିଙ୍କ ପତ୍ରାବଳୀ ବର୍ତ୍ତମାନ ପ୍ରକାଶିତ ହୋଇସାରିବା ପରେ ଏ କଥା ସ୍ପଷ୍ଟ ହୋଇଯାଇଛି ।

ତେଣୁ ଗ୍ରନ୍ଥାବଳୀର ପରବର୍ତ୍ତୀ ସଂସ୍କରଣ ମାନଙ୍କରେ ଏ କବିତାଗୁଡ଼ିକୁ ଉକ୍ତିକାବ୍ୟ ଶ୍ରେଣୀରେ ଦର୍ଶାଇ ଅନ୍ତର୍ଭୁକ୍ତ କରିବା ଏକାନ୍ତ ସମୀଚୀନ ।

## 'କୀଚକ-ବଧ' : କବିତାକ୍ଷେତ୍ରରେ ଆତ୍ମବିଶ୍ୱାସର ପ୍ରତିଷ୍ଠା

୧୯୦୨ ମାର୍ଚ୍ଚରେ ବିଜେପୁର ବଦଳି ପୂର୍ବରୁ ପିତୃବିୟୋଗ ଏବଂ ବିଜେପୁର ଅବସ୍ଥାନ କାଳରେ ୧୯୦୨ ଜୁଲାଇରେ ଜ୍ୟେଷ୍ଠପୁତ୍ରର ମୃତ୍ୟୁରେ ଦୁଃଖୀ ଗଙ୍ଗାଧରଙ୍କ ବିଜେପୁର ଜୀବନର ସୂଚନା ଦେଇ ଭଗବାନବାବୁ ପିତୃ ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି : "ତଥା ଚ ଉପର୍ଯ୍ୟୁପରି ଦୁର୍ବିପାକର ଦଗ୍‌ଦାଗ୍ନି ଅନଳରେ ପିତାଙ୍କ ହୃଦୟ ଯେତେବେଳେ ଦଗ୍‌ଧୀଭୂତ ହୋଇ ସଂସାର କ୍ଷେତ୍ର ବିଷବତ୍ ବୋଧ ହେଉଥିଲା, ସେତେବେଳେ ସ୍ଥିତ-ପ୍ରଜ୍ଞ ହେବାର ଅବକାଶ କାହିଁ ? ତଥାପି ତାଙ୍କର ହୃଦୟ-କନ୍ଦର ବାଣୀଙ୍କର ବାଣୀ-ନିନାଦରେ ଝଙ୍କୃତ ହୋଇ ତାଙ୍କ ମନପ୍ରାଣ ଆତ୍ମଚେତନାର ସ୍ଫୂର୍ତ୍ତି ଲାଭ କରି ସ୍ନିଗ୍ଧ ହୋଇ ଉଠିଥିଲା । ପାଖରେ ଥାଏ ତାଙ୍କର ଫର୍ଦ୍ଦିଏ 'ବିରାଟ ପର୍ବ' କେବଳ ତହିଁର କିଛି କିଛି ଅଂଶ ପାଠ କରି ମନୋବେଦନା ଅପନୋଦନ କରୁଥାନ୍ତି । XX" (ପୃ-୪୯)

ଏହା ହିଁ 'କୀଚକ ବଧ' ରଚନାର ଅବ୍ୟବହିତ ପୂର୍ବରୁ ଗଙ୍ଗାଧରଙ୍କ ମନ ଓ ଜୀବନର ଆଲେଖ୍ୟ । କିନ୍ତୁ ସମଗ୍ର ଜଞ୍ଜାଳ ତଥା ପୁତ୍ରଶୋକ ଜନିତ ଦୁଃଖର ଯବନିକା ଅନ୍ତରାଳରେ ଥିବା ସ୍ରଷ୍ଟା-କବିର ସାରସ୍ୱତ ସ୍ୱପ୍ନରେ ସ୍ଥାନ ପାଇଥିଲା 'କୀଚକ ବଧ' କାବ୍ୟର ନକ୍ସା ସେହି ବିରାଟପର୍ବ ଅବଲମ୍ବନରେ ; ଏବଂ ମନେ ହୁଏ ସେହି ୧୯୦୨ ନଭେମ୍ବର ମାସରେ ହିଁ ଏ କାବ୍ୟର ରଚନା ଆରମ୍ଭ ହୋଇଥିଲା, ଯାହା ଫଳରେ ସାତୋଟି ସର୍ଗରେ ରଚିତ ଏହାର ପାଣ୍ଡୁଲିପି କବି ରାଧାନାଥଙ୍କ ହସ୍ତଗତ ହୋଇଥିଲା ୧୯୦୩ ଜୁଲାଇ ୨୭ ତାରିଖରେ । ଜଞ୍ଜାଳର ନିର୍ବେଦରୁ ନିଷ୍କୃତି ପାଇଁ ସାଧକ କବିଙ୍କୁ ସାହାଯ୍ୟ କଲେ ଚିନ୍ମୟୀ ଦେବୀ । ଏହାର ସ୍ୱୀକୃତି ଅଛି ପ୍ରାୟ ଦଶ ବର୍ଷ ପରେ ସ୍ୱରଚିତ 'ତପସ୍ୱିନୀ' କାବ୍ୟର ପଂକ୍ତିରେ : ଦରିଦ୍ରତା-ପଙ୍କ-ପୂର୍ଣ୍ଣ ତଥା ଜଞ୍ଜାଳ-କଳୁଷିତ ଜୀବନ ସରୋବରରେ ଶରତର ପ୍ରଭାବ ବିସ୍ତାର କରି ସେହି ଦେବୀ ଆଣି ଦିଅନ୍ତି ଏକ ଶାନ୍ତ ନିର୍ମଳ ପ୍ରସନ୍ନ ଭାବ । ଦାରିଦ୍ର୍ୟ ଓ ଜଞ୍ଜାଳ ଉଭୟର ପରିପ୍ରେକ୍ଷୀରେ ଏ ପଂକ୍ତି 'ତପସ୍ୱିନୀ' ଅପେକ୍ଷା 'କୀଚକ ବଧ' ପ୍ରତି ବେଶୀ ପ୍ରଯୁଜ୍ୟ ମନେ ହୁଏ । ଆତ୍ମାର ସନ୍ତୁଳନ ପରିବର୍ତ୍ତେ ପ୍ରଶମନ ମଧ୍ୟରେ ଧ୍ୟାନ-ନିରତ ସାଧକ-କବି ଆପଣାର ନିଜସ୍ୱ ଖାଞ୍ଚରେ ଯେଉଁ କବିତା ଲେଖିଥିଲେ ତାଙ୍କର ସେହି ଆତ୍ମବିଶ୍ୱାସ ତହିଁରେ ହେଲା ମୁଖ୍ୟ ପ୍ରେରଣା । କାବ୍ୟକ୍ଷେତ୍ରରେ ପୂର୍ବ ପ୍ରବଳ ସଙ୍କୋଚ ପରିବର୍ତ୍ତେ ଦୃଢ଼ ଆତ୍ମପ୍ରତ୍ୟୟ ହିଁ କବି ଗଙ୍ଗାଧରଙ୍କ ମୌଳିକତାକୁ ପ୍ରମାଣିତ କଲା ।

**'କୀଚକ-ବଧ' କାବ୍ୟର ଆଖ୍ୟାନ ବସ୍ତୁ ଓ ସାଧାରଣ ସମୀକ୍ଷା :**

"ବିରାଟ ନଗର ମହୀ ମଧ୍ୟେ ମନୋହର" । ବିପଣୀ, ହାଟ, ବଜାର, ତୁଙ୍ଗ ପ୍ରାସାଦ, ପ୍ରଶସ୍ତ ରାଜପଥ ଦ୍ୱାରା ଶୋଭିତ ହୋଇ ଲକ୍ଷ୍ମୀପୁରରେ ପରିଣତ ହୋଇଥାଏ । ଅଧିବାସୀମାନେ ଧନଶାଳୀ, ସୁନ୍ଦର ଏବଂ ଉନ୍ନତ । ନଗରର ଉଚ୍ଚତମ ହର୍ମ୍ୟ ହେଉଛି ଶଙ୍ଖଶୁଭ୍ର ରାଜଭବନ । ତାହାର ଭିତ୍ତି, ପ୍ରକୋଷ୍ଠ, ତୋରଣ, ସ୍ତମ୍ଭ, ମଣ୍ଡପ-ସକଳ ହୀରା, ନୀଳା, ମୋତି, ମାଣିକ୍ୟ, ସ୍ଫଟିକାଦି ରତ୍ନ-ଖଚିତ । କେତେ ବିଚିତ୍ର କୃତ୍ରିମ ସୁବର୍ଣ୍ଣ ଲତାରେ ନବରତ୍ନ ପୁଷ୍ପରାଜି, ହେମପତ୍ର ରତ୍ନମୟ ଶୁକ, ମୟୂର, ଚକ୍ରବାକ ପକ୍ଷୀ, ସ୍ୱର୍ଣ୍ଣ-ସୋପାନ-ବଦ୍ଧ ସରସୀରେ ସ୍ଫଟିକର ଜଳ ମଧ୍ୟରେ ରଜତ-କୁମୁଦ, ଇନ୍ଦ୍ରନୀଳ ନୀଳୋତ୍ପଳ, ସ୍ୱର୍ଣ୍ଣ-କେଶର-ଶୋଭି ପଦ୍ମରାଗ-କମଳ, ରୌପ୍ୟ ରାଜହଂସ, ରୌପ୍ୟ ମୀନ ପ୍ରଭୃତିର ସମାବେଶରେ ଏହାର କଳାତ୍ମକ ସମୃଦ୍ଧି ଓ ସୌନ୍ଦର୍ଯ୍ୟ ସୂଚିତ ହୁଏ । ରାଜପୁର-ରମଣୀଙ୍କ ସ୍ନେହପାଳିତ ମୃଗଶିଶୁ, ଗଜବାଜି ଏବଂ ଲକ୍ଷ ଲକ୍ଷ ପୟସ୍ୱିନୀ ଧେନୁ ଏ ନଗରର ସମ୍ପଦ । ବିଚିତ୍ର ଉପବନରେ ବହୁ ପୁଷ୍ପଫଳ ଶୋଭିତ ଲତା ପାଦପ, ବହୁ ପକ୍ଷୀର କ୍ରୀଡ଼ା-ଚଞ୍ଚଳ ଜୀବନର ଆନନ୍ଦ ମଧ୍ୟରେ କଟିଯାଏ ବିଳାସୀ ପୁରବାସୀର ହର୍ଷୋତ୍ଫୁଲ୍ଲ ଦିନ । ଚକ୍ଷୁ କର୍ଣ୍ଣ ନାସିକା ପାଇଁ ରୂପ ରସ ଗନ୍ଧର ଅପୂର୍ବ ସମାବେଶ ଏହି ଧରା-ସ୍ୱର୍ଗରେ ବିଳାସ-କୁଶଳ ନାଗର ନାଗରୀଙ୍କ ଜୀବନ ନିତ୍ୟ ସୁଖମୟ ହୋଇଥାଏ । ଏ ସମ୍ପଦ ଦୋଳାରେ ଦୋଳି ବିରାଟ ରାଜନ ମହାସୁଖରେ ରାଜକାର୍ଯ୍ୟ ସମ୍ପାଦନ କରୁଥାନ୍ତି । ଦ୍ୱାଦଶ ବର୍ଷ ବନବାସ ପରେ ଏକ ବର୍ଷ ଅଜ୍ଞାତବାସ ଉଦ୍ଦେଶ୍ୟରେ ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ, ସହଦେବ ପଞ୍ଚଭ୍ରାତା ଏବଂ ପାଣ୍ଡବ କୁଳବଧୂ ଦ୍ରୌପଦୀ ଛଦ୍ମ ରୂପରେ ଆଶ୍ରୟ ନେଇଥିଲେ ଏହି ବିରାଟ ପୁରରେ । ଯୁଧିଷ୍ଠିର ହୋଇଥାନ୍ତି ରାଜସଭାସଦ, ଭୀମ ରାଜାଙ୍କ ସୂପକାର, ଅର୍ଜୁନ ଥାଆନ୍ତି ରାଜଦୁହିତାଙ୍କ ସଂଗୀତ ଶିକ୍ଷକ, ନକୁଳ ଥାଆନ୍ତି ଅଶ୍ୱପାଳ ଏବଂ ସହଦେବ ଗାଭିରକ୍ଷକ । ପାଣ୍ଡବ ବଧୂ ଯାଜ୍ଞସେନୀ ହୋଇଥିଲେ ବେଶକାରିଣୀ ସୈରିନ୍ଧ୍ରୀ ।

ବସନ୍ତ ଋତୁର ଆଗମନରେ ବିରାଟପୁରର କାନନ ଉପବନ ସମସ୍ତ ହିଁ ନବ-ପତ୍ର-ପୁଷ୍ପ-ଫଳ-ଶୋଭିତ ହୋଇ ନବଜୀବନ ଲାଭ କରିଛି । ଶୀକର-ଶୀତଳ କ୍ଲାନ୍ତ ମଳୟ ଧରା ବସନ୍ତ-ଅତିଥିର ଆଗମନ ପାଇଁ ବିପୁଳ ସାଜସଜ୍ଜା କରିଛି ରାଜକୀୟ ଆଡମ୍ବରରେ । ଆସିଲେ ବସନ୍ତ ସଖା ଧୀର ମଳୟ ଏବଂ ନବ-ମାଳିକା-ଅର୍ଘ୍ୟ ହସ୍ତରେ ସୁନ୍ଦରୀ ଚନ୍ଦ୍ରିକା । ଏ ସମାବେଶରେ ଶେଷରେ ପ୍ରବିଷ୍ଟ ହେଲେ କନ୍ଦର୍ପ ଦେବତା । ଲାଗିଗଲା ଅପୂର୍ବ ତାଣ୍ଡବ—"ପ୍ରୀତି ପାରାବାରେ

ଛୁଟିଲେ ପ୍ରାଣ-ପୋଡ ଯୋଗୀଏ (ମିଳନ ସୁଖସ୍ୱେଚ୍ଛାଭୋଗୀମାନେ), ମଦନ-ଅନଳ ତାପରେ ସନ୍ତାପିତ ଯୋଗୀଏ (ଫଗନ-ହରନ୍ତ ଯେ ଗାନ୍ଧର୍ବସାନେ) । ସେଥିର ଏହି ଉନ୍ମାଦନାମୟ କାଳରେ ଆସେ ଚୈତ୍ର ମଙ୍ଗଳବାର—ବରାଟ ନାଗଙ୍କ ବନଦୁର୍ଗା ପୂଜାର ପୁଣ୍ୟତିଥି । ଏହି ଉଦ୍ଦେଶ୍ୟରେ ସ୍ୱୟଂ ରାଣୀ ସୁଦେଷ୍ଣା ସକଳ ପୁରନାରୀଙ୍କ ସହ ଯାତ୍ରା କଲେ ବନଦୁର୍ଗା ମନ୍ଦିରକୁ । ରାଜପଥରେ ଚଳିଲି ବହୁବର୍ଣ୍ଣ-ପଟ୍ଟବସ୍ତ୍ର-ଶୋଭିତା ଏବଂ ଉଜ୍ଜ୍ୱଳ-ରତ୍ନ ଅଳଂକାର-ମଣ୍ଡିତା କାନ୍ତିମୟୀ ପୁରବାସିନୀଙ୍କ ବର୍ଣ୍ଣାଢ୍ୟ ଶୋଭାଯାତ୍ରା । ଏ ମଧ୍ୟରେ ଥାଆନ୍ତି ରୂପସୀ ସୈରନ୍ଧ୍ରୀ, ଯାହାଙ୍କର ନିରାଭରଣ ସରଳ ସୌନ୍ଦର୍ଯ୍ୟ ସକଳ ବସ୍ତ୍ରାଳଙ୍କାର ଶୋଭାକୁ ପରାଭୂତ କରୁଥାଏ । ଧ୍ୱଜଳ ତୋରଣ ଉପରେ ଉପବିଷ୍ଟ ବୀର କୀଚକ ଏ ଅପୂର୍ବ ଶୋଭାଯାତ୍ରାର ଲଲାମଭୂତା ସୁନ୍ଦରୀ ସୈରନ୍ଧ୍ରୀର ରୂପାକୃଷ୍ଟ ହୋଇପଡ଼ିଲ ।

ବନବାସାନ ପରେ ଅସିଛି ସନ୍ଧ୍ୟା—ବସନ୍ତ ସନ୍ଧ୍ୟା । ପଦ୍ମ, ଚକ୍ରବାକ, ମଲ୍ଲିକା, ସୂର୍ଯ୍ୟମୁଖୀ, ମଳୟ, ଚନ୍ଦ୍ରିକା—ସବୁ ପ୍ରକୃତିକ ସୁଖଦୁଃଖ ଉପାଦାନର ମଧ୍ୟରେ ସୁନ୍ଦର ହୋଇଉଠିଲି ନରନାରୀଙ୍କର ଭଲାପସମସ୍ତ ମୁହୂର୍ତ୍ତ ; ଅନୁରୂପ ଭାବେ ଆରମ୍ଭ ହେଲ ବରଷାର ଦୁଃଖ କାଳ । ବୀର କୀଚକ ଆଜି ସେହି ଦୁଃଖର ଶରବ୍ୟ ହୋଇଛି । ରୂପସୀ ସୈରନ୍ଧ୍ରୀ ହୋଇଛି କୀଚକର ଧ୍ୟେୟ । ନଗରୀରେ ବିରାଟଦ୍ୱାରର ସୁବ୍ୟବସ୍ଥା ନାଗରିକଙ୍କ ମଧ୍ୟରେ ବିରାଟପୁରର ବାସ୍ତବ ରାଜା କୀଚକ ଆଜି ନିଦ୍ରାକୁ ବର୍ଜିତ—ଧ୍ୟେୟ ସେହି ଭୁଜଙ୍ଗମା ରୂପବତୀ ସୈରନ୍ଧ୍ରୀ । ତାର ବ୍ୟାକୁଳ ମନର ବ୍ୟଥା ଅପନୋଦନ କରି ଆସିଲ ପ୍ରଭାତ; ଆରମ୍ଭ ହେଲ କୀଚକର ଯୋଜନା ପାଇଁ କାର୍ଯ୍ୟ । ସୈରନ୍ଧ୍ରୀ ନିକଟରେ ଏ ପ୍ରସ୍ତାବ ଉତ୍ଥାପନ କରିବାର ଆୟୁଧ ହେଲ ଚତୁରୀ ଦୂତୀ ଚପଳା । ବହୁ ଆଶା ଦେଇ ଏବଂ ବିଜୟର ଆଶା ନେଇ ସୈରନ୍ଧ୍ରୀ ନିକଟରେ ଉପସ୍ଥିତ ହୋଇ ଆରମ୍ଭ କଲ ରୂପ ଗୁଣ ପ୍ରଶଂସା । ସତୀ କଳ୍ପ ମୂଳରୁ ସନ୍ଦେହ କରିଥିଲେ ଏ ଦାସୀର ଉଦ୍ଦେଶ୍ୟକୁ ଏବଂ ଶେଷରେ ଅତି କଠୋର ପ୍ରତ୍ୟାଖ୍ୟାନ ମଧ୍ୟରେ କହିଥିଲେ, "ଆଉ ମୋ ପାଖକୁ ନ ଆସିବୁ କେବେ ଆଜି ଏବେ ଶୀଘ୍ର ଚଳ ।" ପୁଣି ସତର୍କ କରାଇ ଦେଇଥିଲେ,

"ନଷ୍ଟେ ଜାଣିଥାଅ ମୋହ ପ୍ରତି ଯେବେ
ଦୁଏ କାହା ଅତ୍ୟାଗ୍ରହ
ସ୍ୱାମୀଏ ମୋହର ଯମ ସଦନକୁ
ଜୀବନ ପେଷିବେ ତାର ।"

ମନମଥ ଦୃପ୍ତ କୃଷ୍ଣିରଣୀ-ନେତ୍ରେ, ଶଙ୍କ୍ୟଭରୀ ମୃଗ ପରାୟେ ଗଲା ପଳାଇ ।” କିନ୍ତୁ ସେ ତଥାପି ପରାଜୟ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହେଁ । କୀଚକ ସମକ୍ଷରେ ତା’ର ପ୍ରଥମ ବିଫଳତା ବର୍ଣ୍ଣନା କଲାବେଳେ ମଧ୍ୟ ସେ କହି ପକାଇଲା, “ମଣିଲି ଚମତ୍କାର ଯା ପାଞ୍ଚ ପତି, ଷଷ୍ଠ ପାଇଁ କି ପୁଣି ତାର ଆପତ୍ତି !” କୀଚକର ଦୁର୍ବାସନାର ସହକାରିଣୀ ରୂପେ କୀଚକର ଅନୁମତି ନେଇ ଯାଇ ରାଣୀ ସୁଦେଷ୍ଣାଙ୍କୁ କୌଶଳରେ କହିଲା ଯେ ସୈରିନ୍ଧ୍ରୀକୁ ସ୍ୱପ୍ନରେ ଦେଖି କୀଚକ ପାନାହାର ତ୍ୟାଗ କରିଛନ୍ତି ବିରହ ବ୍ୟଥାରେ । ତଥାପି ସତୀ ତଥା ନାରୀ-ମର୍ଯ୍ୟାଦାର ପୂଜାରିଣୀ ସୁଦେଷ୍ଣା ଏ ପ୍ରସ୍ତାବ ପ୍ରତି ବିମୁଖ ହେବାରୁ ଚପଳା ପରାମର୍ଶ ଦେଲା ସୈରିନ୍ଧ୍ରୀକୁ କେବଳ ଥରେ ମାତ୍ର ଦେଖିଲେ କୀଚକ ସନ୍ତୁଷ୍ଟ ହେବେ । ସୁତରାଂ ଧର୍ମପରାୟଣା ସୁଦେଷ୍ଣାଙ୍କ ପାଇଁ ଆସିଲା ବିଷମ ପରୀକ୍ଷା । ଧର୍ମ ନାମରେ ଚପଳାକୁ ବାରଂବାର ସାବଧାନ କରାଇ ଅବଶେଷରେ ଭ୍ରାତୃ ସ୍ନେହର ବଶବର୍ତ୍ତୀ ହୋଇ କହିଲେ, ସୈରିନ୍ଧ୍ରୀ କୀଚକ ପୁରକୁ ମଦ୍ୟପାତ୍ର ନେଇ ଦେଇ ଆସିବା ଛଳରେ କେବଳ ମାତ୍ର ଦର୍ଶନ ଦେବ ଏବଂ ତଦନୁଯାୟୀ ଦ୍ରୌପଦୀଙ୍କୁ ପ୍ରେରଣ କଲେ । ସତୀର ପରୀକ୍ଷା ବେଳ ଆସିଲା । ତାଙ୍କ ଅଭ୍ୟର୍ଥନା ପାଇଁ ପ୍ରସ୍ତୁତ କୀଚକର କୌଶଳ ଦ୍ରୌପଦୀଙ୍କୁ ଅଜ୍ଞାତ ନ ଥିଲା । ତେଣୁ ପାନପାତ୍ରଟି ଥୋଇ ଦେଇ ସେ ଫେରିଗଲେ । ଉନ୍ମତ୍ତ କାମାନ୍ଧ କୀଚକ ପଶ୍ଚାତ୍‌ଧାବନ କରି ତାଙ୍କର ବସ୍ତ୍ରାଞ୍ଚଳ ଧାରଣ କରିବା ମୁହୂର୍ତ୍ତରେ ଉଦ୍ୟାନ ମଧ୍ୟସ୍ଥ ଏକ ନିମ୍ନମୁଖୀ ତରୁଶାଖାରେ ପ୍ରଚଣ୍ଡ ଆଘାତ ପାଇଲା ତାର ମସ୍ତକ । ସତେ ଅବା ସତୀଧର୍ମର ରକ୍ଷା ଲାଗି ତାହା ଥିଲା ପ୍ରକୃତିର ଅସ୍ତ୍ର । କୀଚକ କବଳରୁ ରକ୍ଷା ପାଇଗଲେ ଏ ଅରକ୍ଷିତା ରୂପବତୀ ସତୀ ।

କିନ୍ତୁ କୀଚକର ଶାନ୍ତି କାହିଁ ? ତା ଶରୀର ପ୍ରତି ଏ ଅବମାନନା—ଏ ପଦାଘାତ; ପୁଣି ଛାର ଦାସୀର ! ଲୋକ-ଚରିତ୍ର-କପୂର୍ଣ୍ଣା ସତୀର ବି ତ ଶାନ୍ତି ନାହିଁ । ଏ ପୁରରେ ରକ୍ଷକ ଆଜି ଭକ୍ଷକ ସାଜିଛି । ତେଣୁ କାଳବିଳମ୍ବ ନ କରି ସୈରିନ୍ଧ୍ରୀ ରାଜସଭାରେ ରାଜାଙ୍କୁ ତାଙ୍କ ଦୁଃଖ ନିବେଦନ କଲେ । କୀଚକର ଇଚ୍ଛାକୁ ରାଜା ସମର୍ଥନ କଲେ ସ୍ୱାଭାବିକ ଭାବେ; କାରଣ ତାହା ଦାସୀ ସୈରିନ୍ଧ୍ରୀ ପକ୍ଷେ ସୌଭାଗ୍ୟର ତୋରଣ । ସୈରିନ୍ଧ୍ରୀ ଏହା ଅନୁମାନ କରିଥିଲେ । କିନ୍ତୁ ତାଙ୍କର ଲକ୍ଷ୍ୟ ଥିଲା ସଭାସଦଙ୍କ ବେଶଧାରୀ ଯୁଧିଷ୍ଠିରଙ୍କ ଆଦେଶ ପ୍ରାପ୍ତି । ଧର୍ମପୁତ୍ର ଅତ୍ୟନ୍ତ ଚାତୁର୍ଯ୍ୟରେ କହିଲେ, “ଦେଖ ଭୀମ-ପରାକ୍ରମ ଯେ, ତାର ଅଭିଳାଷ ଅବଶ୍ୟ ସାଧିବ । ଉପାୟ କ’ଣ, ଦ୍ୱିତୀୟ ପତିକୁ ବରଣ କରିଯାଅ ।” ଦ୍ରୌପଦୀ ଏ ଇଙ୍ଗିତ ବୁଝି ହୃଷ୍ଟ ମନରେ ଫେରିବା ପରେ ପୁଣି ଚପଳା ଆସି ଶୁଣାଇଗଲା କୀଚକର ଶେଷ ଆବେଦନ; ଶାନ୍ତିରେ କାର୍ଯ୍ୟୋଦ୍ଧାର ନ ହେଲେ

ବଳପ୍ରୟୋଗ କରାଯିବ । ତରୁଣୀ ସୈରନ୍ଧ୍ରୀ ବିସ୍ମୟ ପାଇଁ ଦିନଟିଏ ସମୟ ମାଗିଲେ ଏବଂ ତତ୍ପରଦିନ ସକାଳେ ନିର୍ଣ୍ଣିତ ଉତ୍ତର ଦେବାକୁ କହିଲେ । ସେହି ରଜନୀରେ ଦ୍ୱିତୀୟ ପାଣ୍ଡବ (ଦ୍ୱିତୀୟ ପତି) ଛଦ୍ମବେଶୀ ସୂପକାରଙ୍କ ସହ କୀଚକ ସଂହାର ଯୋଜନା ପୂର୍ଣ୍ଣହେଲା । ତଦନୁଯାୟୀ ତପଳାକୁ କହିଲେ ନଗର ପ୍ରାନ୍ତସ୍ଥ ନୃତ୍ୟମନ୍ଦିର ହେବ କୈଶରଦ୍ୱାର ପାଇଁ ଗୋପନ ମିଳନ ସ୍ଥାନ । ସେହି ରଜନୀରେ ସେହି ନୃତ୍ୟମନ୍ଦିରରେ ନାରୀବେଶୀ ଭୀମ ହସ୍ତରେ କୀଚକର ମୃତ୍ୟୁ ହେଲା । ପରଦିନ ପ୍ରାତଃ କାଳରେ ଏ ସମ୍ବାଦ ପ୍ରଚାରିତ ହେବାପରେ କୀଚକର ଅନେକଶତ ଭ୍ରାତା ସୈରନ୍ଧ୍ରୀଙ୍କୁ ଭ୍ରାତାର ମରଣ ପାଇଁ ଦାୟୀକରି ତାଙ୍କୁ ମଧ୍ୟ ଚିତାନଳରେ ବିସର୍ଜନ କରିବା ମାନସରେ ଅତ୍ୟାଚାର ଆରମ୍ଭ କରିଦେଲେ । ଏ ସମ୍ବାଦ ପାଇ ଭୀମ ସେଠାରେ ଅନ୍ୟ ଏକ ଛଦ୍ମବେଶରେ ଉପସ୍ଥିତ ହୋଇ ସେମାନଙ୍କୁ ମଧ୍ୟ ନିହତ କଲେ ଏବଂ ଏକଶହ ଶତ ସହୋଦରଙ୍କ ଦେହାବଶେଷ ଅଗ୍ନିର ଭକ୍ଷ୍ୟ ହେଲା—"ଚଇଁ ଚଇଁ ସିଇଁ ସିଇଁ ଶବଦେ ରୁଧିର ପିଇ... କଟ କଟ ଫଟଫଟ ଶବଦ କରି ପ୍ରକଟ, ଖ୍ୱେବାଇ ଖ୍ୱେବାଇ ବହ୍ନି ଖାଇଲା ଶବ ।" ଧର୍ମରକ୍ଷା-ପକ୍ଷପାତୀ କବିଙ୍କର ମନ ଧର୍ମର ଗ୍ଲାନିରେ ନିଷ୍କରୁଣ ହୋଇ ବର୍ଣ୍ଣିତ କରିଛି ମହାଭୀମଙ୍କର ସଂହାରରୂପୀ ହବ୍ୟବାହନ ।

ସାରଳା ମହାଭାରତରେ ଏ ଗଳ୍ପ ଏବଂ ଏହାର ଚରିତ୍ର ଗୁଡ଼ିକର ବୈଶିଷ୍ଟ୍ୟ ପ୍ରାପ୍ତ ଏହିପରି । ପୌରାଣିକ ଶୈଳୀରେ ରଚିତ ହୋଇଥିବାରୁ ସେ ଗଳ୍ପର କଥନଭଙ୍ଗୀ ପ୍ରତ୍ୟକ୍ଷ ହୋଇଯାଇଛି ମାତ୍ର । ଶାରଳାଦାସଙ୍କ ବର୍ଣ୍ଣନାରେ ସୁଦେଷ୍ଣା ( ଶ୍ରୀକୃଷ୍ଣା ) ଚରିତ୍ରରେ ଧର୍ମଶୀଳତାର କାରଣ ହୋଇଛି ସୈରନ୍ଧ୍ରୀଙ୍କ ପାଖରେ ତାଙ୍କର ଅଙ୍ଗୀକୃତ ଯେ ଦାସୀକୁ ସେ ପରପୁରୁଷ ସେବା କମ୍ବା ଉଚ୍ଛିଷ୍ଟ ଭକ୍ଷଣର ଆଦେଶ ଦେବେ ନାହିଁ ଓ ଭର୍ତ୍ସନା କରିବେ ନାହିଁ । କିନ୍ତୁ ମେହେରଙ୍କ ଚିତ୍ରଣରେ ସୁଦେଷ୍ଣା ମୌଳିକ ଭାବରେ ଏକ ସତୀ, ସାଧ୍ୱୀ, ଧର୍ମପରାୟଣା ଚରିତ୍ର—ନିଜ ପରିପ୍ରେକ୍ଷୀରେ ତଥା ଅନ୍ୟ ସବୁ ନାରୀ ପ୍ରସଙ୍ଗରେ । ସତୀ ନାରୀର ମର୍ଯ୍ୟାଦା ରକ୍ଷା ସେ ଚରିତ୍ରର ବିଶେଷତ୍ୱ । ପକ୍ଷାନ୍ତରେ, ଦୂତୀ ତପଳା ( ସାରଳାଙ୍କ ରଚନାରେ କରୁଣା) ଚିତ୍ରଣ ଦୃଷ୍ଟିରୁ କରୁଣା ଅଧିକ ବାସ୍ତବ । ବିଳାସୀ ରାଜପୁରୀର ଜଣେ ଦାସୀ ଅପର ଜଣେ ଦାସୀ ପ୍ରତି ସ୍ୱଷ୍ଟଭାବେ ପ୍ରଭୁର ଉପଭୋଗ ନିମନ୍ତେ ନିଜକୁ ଉତ୍ସର୍ଗ କରିବାର ଆହ୍ୱାନ ଦେବା ତା ପକ୍ଷରେ ଅତି ସ୍ୱାଭାବିକ । ପକ୍ଷାନ୍ତରେ ମେହେରଙ୍କ ସୃଷ୍ଟିର ତପଳା ଧୂର୍ତ୍ତା ଓ ଚତୁରା । ତାର ହାତ ସୁଦେଷ୍ଣାଙ୍କୁ ଏବଂ ସେହି ଉଦ୍ଦେଶ୍ୟ ଯୋଗୁଁ ଚତୁରତା ସହ କାର୍ଯ୍ୟ ହାସଲ କରିବା ଆବଶ୍ୟକ ହୋଇପଡ଼ିଛି । ଶିଳ୍ପ ଦୃଷ୍ଟିରୁ ଏହି ଚରିତ୍ରଟି 'କୀଚକ ବଧ' କାବ୍ୟର ଏକ ସଫଳ ଚରିତ୍ର । କହିବା

ବାହୁଲ୍ୟ ଦୃଶ୍ୟର ଉତ୍ସଜନିତ ସ୍ୱରୂପ ଦ୍ୱାରା ସୁଦେଷ୍ଣା ଚରିତ୍ରର ମୌଳିକ ମର୍ଯ୍ୟାଦା-ବୃଦ୍ଧି ମଧ୍ୟ ସଂପାଦିତ ହୋଇ ଉଠିଛି । ଦୃଶ୍ୟକୁ କାର୍ଯ୍ୟରେ ପ୍ରୟୋଗ କରିବା ନିମିତ୍ତ କୀଚକ ଯେତେ ବସ୍ତ୍ରାଳଂକାର ପ୍ରଲୋଭନ ଦେଖାଉଛି, ଧରା ପଡ଼ିବା ଉପରେ ଚପଳା ସେ ସେ ସବୁ କେବଳ ପ୍ରତ୍ୟାଖ୍ୟାନ କରିଛି ତାହା ନୁହେଁ, କୀଚକ ବୀରକୁ ମଧ୍ୟ ସତର୍କ କରି କହିଛି ଯେପରି ତାର ଭୂମିକା ବିଷୟରେ ସାଅନ୍ତାଣୀ କିଛି ନ ଜାଣନ୍ତୁ, କାରଣ ତାହାହେଲେ "ଉଠିଯିବ ଦାନାପାଣି" ।

'ଇନ୍ଦୁମତୀ'ରେ ରାଧାନାଥ-ଶୈଳୀର ଅନୁବର୍ତ୍ତନ ମାଧ୍ୟମରେ ଥିଲା କବିଙ୍କ ସାଫଲ୍ୟର ପ୍ରମାଣ; 'ଉତ୍କଳ ଲକ୍ଷ୍ମୀ'ରେ ହୋଇଥିଲା ତାହାର ଏକ ସଂପୂର୍ଣ୍ଣ ନୂତନ ପ୍ରକାଶ, ଆଖ୍ୟାନବସ୍ତୁର ସ୍ୱାତନ୍ତ୍ର୍ୟ ଭିତ୍ତିରେ କବି ଏକ ନୂତନ ପ୍ରୟୋଗ କରିଥିଲେ । ଏହି ପ୍ରୟୋଗର ସ୍ତର ଅତିକ୍ରମ କଲାପରେ 'କୀଚକ ବଧ' କାବ୍ୟରେ କବିଙ୍କର ନିର୍ଦ୍ଦିଷ୍ଟ ଆତ୍ମବିଶ୍ୱାସର ପ୍ରକାଶ ହେଲା । ଏଥିରେ କବିଙ୍କ ସଙ୍ଗୀତ-ପ୍ରିୟତା ପୋଷିତ ହୋଇଛି ରୀତିକାଳୀନ ରାମକେରୀ, ଭୈରବୀ ଇତ୍ୟାଦି ବିଭିନ୍ନ ସୁରେସ୍ଥ ଛନ୍ଦର ପ୍ରୟୋଗରେ । ନଗର ବର୍ଣ୍ଣନାରେ ମହାଭାରତ ପରିବେଶର ଉପଯୋଗୀ ରୀତି-ଶୈଳୀର ପ୍ରୟୋଗ କବିଙ୍କ ଔଚିତ୍ୟବୋଧର ପ୍ରମାଣ । ଦ୍ୱିତୀୟ ସର୍ଗର ବସନ୍ତ ବର୍ଣ୍ଣନା ପ୍ରାଚୀନ ଓ ନବୀନ ଧାରାର ସମନ୍ୱୟ ତଥା ଉଦ୍ଦୀପନ ଗୁଣ ଗୌରବରେ ରାଧାନାଥଙ୍କ 'ଚନ୍ଦ୍ରଭାଗା'ର ଏକାନ୍ତ ସମକକ୍ଷ । ସାରଳା ମହାଭାରତର 'ବସନ୍ତ ଉତ୍ସବ' ପରିବର୍ତ୍ତେ 'ଚଇତ ମଙ୍ଗଳବାର' ପୂଜା ଓ କାନନ ଶୋଭା ମଧ୍ୟରେ ପଶ୍ଚିମ ଓଡ଼ିଶାର ପ୍ରକୃତି ତଥା ଜୀବନର ଅନୁପ୍ରବେଶ ଘଟିଛି । ସତୀତ୍ୱ ଓ କାମୁକତ୍ୱର ସଂଘର୍ଷ ମଧ୍ୟରେ ଅସହାୟା ସତୀର ମନସ୍ତତ୍ତ୍ୱ, ଚପଳାର ସ୍ୱରୂପ ଓ ସୁଦେଷ୍ଣାଙ୍କ ମହତ୍ତ୍ୱ ସବୁ ରହିଛି କବିଶକ୍ତିର ସାକ୍ଷର । ମୋଟରେ ବିଂଶ ଶତାବ୍ଦୀର ପ୍ରଥମ ଓଡ଼ିଆ କାବ୍ୟ ଏହି 'କୀଚକ ବଧ'ରେ ଗଙ୍ଗାଧରଙ୍କ ସାଧନାର ଏକ ଦିଗନ୍ତ ସ୍ତର ହିଁ ରୂପଗ୍ରହଣ କରିଛି କହିବା ସର୍ବତୋଭାବେ ଯଥାର୍ଥ । ଏହାର ଅନ୍ୟତମ କାରଣ ହେଲା, ୧୯୧୦ ପରବର୍ତ୍ତୀ କାବ୍ୟ ମାନଙ୍କରେ ଗଙ୍ଗାଧରୀ ରୀତିର ମାର୍ଜିତ ବିକଶିତ ରୂପର ସ୍ନିଗ୍ଧତା ତଥା ଚମତ୍କାରିତା ମଧ୍ୟରେ ଯେଉଁ ସ୍ୱଚ୍ଛନ୍ଦ ସ୍ୱାଧୀନ କାବ୍ୟ-କୌଶଳ ଦେଖିବାକୁ ମିଳେ ତାହାର ଅରୁଣୋଦୟ ହୋଇଥିଲା 'କୀଚକ ବଧ' କାବ୍ୟରେ ।



# ଚତୁର୍ଥ ପରିଚ୍ଛେଦ

# ପ୍ରତିଷ୍ଠା ପର୍ବ

**୧୯୦୩-୧୯୧୦ :**

ଗଙ୍ଗାଧରଙ୍କ କବି ଜୀବନ ୧୮୯୦ରୁ ୧୯୨୩ ପର୍ଯ୍ୟନ୍ତ ପରିବ୍ୟାପ୍ତ । ୩୩ ବର୍ଷର ଏହି ଦୀର୍ଘକାଳ ମଧ୍ୟରୁ ଆଲୋଚ୍ୟ ଆଠୋଟି ବର୍ଷରେ ଗଙ୍ଗାଧରଙ୍କ ଲେଖନୀର ନିରବଚ୍ଛିନ୍ନ ନୀରବତା ପାଇଁ ଆପାତତଃ କୌଣସି ମନ ବୁଝିଲା ଭଳି ସୂତ୍ର ବା କୈଫିୟତ୍ ମିଳେ ନାହିଁ । ୧୯୦୩ ପୂର୍ବର ସାତ ଆଠ ବର୍ଷ ମଧ୍ୟରେ ଜୀବନ ଗତିକୁ ପ୍ରଭାବିତ କଲାଭଳି ଘଟଣାବଳୀ ମଧ୍ୟରେ ଆନ୍ଦୋଳିତ କବିଚିତ୍ତ ତଥାପି କିଛୁ କିଛୁ ଲେଖିବାରୁ ବିରତ ହୋଇ ନଥିଲା । 'କୀଚକ ବଧ' ବାସ୍ତବରେ ହୋଇଥିଲା ତାଙ୍କର ଶୋକ-ବିକ୍ଷୁବ୍ଧ ଜୀବନରେ ଶାନ୍ତିର ଅବଲମ୍ବନ । ସେ ଧରଣର କୌଣସି ସ୍ମରଣୀୟ ଘଟଣା ଶଂସିତ କାଳରେ ଘଟିନାହିଁ । ବିଜେପୁର, ବରପାଲୀ, ସମ୍ବଲପୁର ବଦଳି, ୨ ବର୍ଷର ଛୁଟି, ସରକାରୀ କାର୍ଯ୍ୟର ଚାପ ଏବଂ ବନ୍ଧୁ ବ୍ୟକ୍ତି ବିଶେଷଙ୍କ ସହ ପରିଚୟ ଏହି ସମୟରେ କବିଙ୍କ ଜୀବନର ମୁଖ୍ୟ କଥା ।

କବିତା କ୍ଷେତ୍ରରେ 'କୀଚକ ବଧ' ତାର ମୌଳିକତା ଓ ଶୈଳୀ ଯୋଗୁଁ କବିଙ୍କୁ ଯଶସ୍ୱୀ କରିଥିଲା । ବିଶେଷତଃ କବିବର ରାଧାନାଥ ରାୟଙ୍କ ଅକୃପଣ ପ୍ରଶଂସା ତାଙ୍କୁ ଉତ୍ସାହିତ କରିବା ବିଷୟରେ ସନ୍ଦେହ ନାହିଁ; ସେ ନିଜେ 'କବିତା କଲ୍ଲୋଳ'ର ଉତ୍ସର୍ଗ ପତ୍ରରେ ରାଧାନାଥଙ୍କ ପ୍ରସଙ୍ଗରେ ଲେଖିବା ବେଳେ ତାଙ୍କର (ରାଧାନାଥଙ୍କର) ଏହି ମନ୍ତବ୍ୟକୁ ସେହି କାବ୍ୟର "ଉତ୍କର୍ଷ ପରିଚାୟକ ଶିରୋଭୂଷଣ" ବୋଲି ଉଲ୍ଲେଖ କରିଛନ୍ତି । ରାଧାନାଥଙ୍କ ବ୍ୟତୀତ ସେ କାଳର ଅନ୍ୟାନ୍ୟ ସମାଲୋଚକମାନେ ମଧ୍ୟ ଗଙ୍ଗାଧରଙ୍କ ଲେଖନୀ-ପ୍ରସୂତ ଏହି କାବ୍ୟଟିର ବହୁଳ ପ୍ରଶଂସା କରିଥିଲେ । ତଥାପି 'କୀଚକ ବଧ'ରେ ପ୍ରେମାଦର୍ଶର ଅଭାବ ଓ ପାପ ପ୍ରଣୟର ବର୍ଣ୍ଣନା ସମକାଳୀନ ଶିଷ୍ଟମଣ୍ଡଳରେ ଆଲୋଚିତ ହୋଇଥିବା ସମ୍ଭବ । ପରବର୍ତ୍ତୀ କାଳରେ ଲୋକ-ଚିତ୍ତର ଏହି ଅତୃପ୍ତି କବି ନନ୍ଦକିଶୋର

ବଳଙ୍କ ପତ୍ରରେ ସୂଚନା ଆକାରରେ ପ୍ରକାଶ ପାଇଥିଲା । କବିକିଶୋର ଆଶଙ୍କା କରିଥିଲେ ଯେ ପାପୀ ନାଟକର ପ୍ରାଣଦଣ୍ଡ ସମ୍ବନ୍ଧେ ପାପପ୍ରଣୟର ବର୍ଣ୍ଣନା ପାଠ ଫଳରେ ଯୁବକଙ୍କ ତରଳ ମନରେ ବିକାରର ଗ୍ରସ୍ତାପାତ ହୋଇପାରେ । ଗଙ୍ଗାଧରଙ୍କ ଭଳି ସୂକ୍ଷ୍ମଦର୍ଶୀ ଆତ୍ମ-ସମୀକ୍ଷା-ପ୍ରବଣ କବି ପାଇଁ ଏ ସୂଚନାର ପ୍ରଭାବ ଅଳ୍ପ ନୁହେଁ । ଏହା ଫଳରେ କବି ଏହାକୁ ଏକ ଆହ୍ୱାନ ରୂପେ ଗ୍ରହଣ କରିନେଇ ଅମର କାବ୍ୟ-ପୁରାଣ ସମୂହର ଅଧ୍ୟୟନ ଏବଂ ସଂସ୍କୃତିର ନିବିଡ଼ତର ଅବବୋଧରେ ଆତ୍ମନିୟୋଗ କରିଥିବା ସମ୍ଭବ । ତାଙ୍କ ଉତ୍ତର-ଜୀବନର ସାମଗ୍ରିକ ସିଦ୍ଧି ନିମିତ୍ତ ଏହି ପ୍ରକାର ଅଧ୍ୟୟନ-ଜନିତ ପ୍ରସ୍ତୁତିର ପ୍ରୟୋଜନ ଅବଶ୍ୟ ସ୍ୱୀକାର୍ଯ୍ୟ । ଏହା ଅତ୍ୟନ୍ତ ସ୍ପଷ୍ଟ ଯେ ୧୯୧୦ ପରବର୍ତ୍ତୀ ଗଙ୍ଗାଧରଙ୍କ କାବ୍ୟ-ଧାରାରେ ଯେଉଁ ସ୍ୱକୀୟତା, ବିଷୟଗତ ବ୍ୟାପକ ଜ୍ଞାନ ତଥା ପରିପକ୍ୱତା ଦେଖାଯାଏ ତାହା ତାଙ୍କ ପ୍ରାରମ୍ଭିକ ଜୀବନର ଅବଦାନ ଠାରୁ ମହତ୍ତର; ଏବଂ ଏହି ମହତ୍ତ୍ୱ ନିଶ୍ଚୟ ସେହି ସାଧନା-ଜନିତ ଅଧ୍ୟୟନ-ମନନର ଫଳ । ଆତ୍ମଜୀବନୀରେ ତଥା ଅନ୍ୟାନ୍ୟ ଜୀବନ ଚରିତରେ ଏ ବିଷୟର ଉଲ୍ଲେଖ ପ୍ରତି କୌଣସି ସଚେତନତା ନଥିବା ଅତ୍ୟନ୍ତ ଦୁର୍ଭାଗ୍ୟର ବିଷୟ ।

ସେ ଯାହା ହେଉ ଏହା ଅନାୟାସରେ ଅନୁମାନ କରାଯାଇପାରେ ଯେ ଏହି ସମୟରେ ସେ ବାଲ୍ମୀକି ରାମାୟଣ, ଅଧ୍ୟାତ୍ମ ରାମାୟଣ, ରାମଚରିତ ମାନସ, ଉତ୍ତର ରାମ ଚରିତ, ଶକୁନ୍ତଳା, ରଘୁବଂଶ ସମେତ ସମଗ୍ର କାଳିଦାସ ଗ୍ରନ୍ଥାବଳୀ ଅଧ୍ୟୟନ କରିଥିଲେ । ଅଧିକନ୍ତୁ ସମକାଳୀନ ପତ୍ରପତ୍ରିକା—ଉତ୍କଳ ପ୍ରଭା, ସମ୍ବଲପୁରର ହିତୈଷିଣୀ, ଉତ୍କଳ ସାହିତ୍ୟ, ଉତ୍କଳ ମଧୁପ, ଆଶା, ଉତ୍କଳ-ସେବକ, ସାରଖଣ୍ଡ ପ୍ରଭୃତି ପାଠ କରି ସମସାମୟିକ ଘଟଣାବଳୀ ସହିତ ମଧ୍ୟ ପରିଚିତ ଥିଲେ । ପରିବେଶର ପ୍ରାଣ-ସ୍ପନ୍ଦନ ତାଙ୍କ କବି-ଅନ୍ତରକୁ ତାଙ୍କ ସ୍ୱକୀୟ ତରଙ୍ଗ ଆଧାରରେ ପ୍ରଭାବିତ କରି ଭବିଷ୍ୟତ ପ୍ରକାଶ ପାଇଁ ପ୍ରସ୍ତୁତ କରୁଥିଲା ।

ବ୍ରଜମୋହନ ପଣ୍ଡାଙ୍କ ପ୍ରେରଣା :

୧୯୦୮ ଏପ୍ରିଲ୍ ମାସରେ କବିବର ରାଧାନାଥଙ୍କ ମହାପ୍ରସ୍ଥାଣରେ ଆଧୁନିକ ଓଡ଼ିଆ ସାହିତ୍ୟରେ ଯେଉଁ ସ୍ଥାନ ଶୂନ୍ୟ ହେଲା ତାହାର ପୂର୍ତ୍ତି ପ୍ରସଙ୍ଗରେ ସେ କାଳର ଶିଷ୍ଟ ଲୋକଙ୍କ ଦୃଷ୍ଟି ଆକୃଷ୍ଟ ହୋଇଥିଲା ଗଙ୍ଗାଧରଙ୍କ ପ୍ରତି । ଠିକ୍

ଏହି ସମ୍ପର୍କ ନେଇ ରେଭେନ୍ସା କଲେଜିଏଟ୍ ସ୍କୁଲରେ ଅଧ୍ୟୟନ କରୁଥିବା ବ୍ରଜମୋହନ ପଣ୍ଡାଙ୍କ ମନରେ ମଧ୍ୟ ଗଙ୍ଗାଧରଙ୍କ ନିକଟକୁ ଏକ ପତ୍ର ରଚନାର ଅଭିଳାଷ ସ୍ଥାନ ପାଇଥିଲା । ଏବେ ସେ ସମ୍ବଲପୁର ଜିଲ୍ଲାର ଅଧିବାସୀ; ପୁନଶ୍ଚ ତାଙ୍କ ମନରେ ମାତୃଭୂମି ଓ ମାତୃସାହିତ୍ୟ ପ୍ରତି ଏକ ବିଶେଷ ଆଦର ଥିଲା । ଫଳତଃ ଅଳ୍ପବୟସ୍କ ତରୁଣ ଛାତ୍ର ଅତି ସନ୍ତର୍ପଣରେ ପ୍ରୌଢ଼ ଗଙ୍ଗାଧରଙ୍କ ନିକଟକୁ ଡିସେମ୍ବର ୧୯୦୯ରେ ପ୍ରଥମ ଚିଠି ଲେଖି ତାଙ୍କ ଲେଖନୀର ଭୂୟସୀ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ତାଙ୍କ ନୀରବତାରେ କ୍ଷୋଭ ପ୍ରକାଶ କରିଥିଲେ । ଅଧିକନ୍ତୁ ପ୍ରତିଶ୍ରୁତି ଦେଇଥିଲେ ଯେ ଗଙ୍ଗାଧରଙ୍କ ସକଳ ରଚନା ପ୍ରକାଶିତ କରିବା ଦିଗରେ ସେ ଉଦ୍ୟମ କରିବେ । ସେତେବେଳେ ୧୯୦୭ରୁ ଆମ୍ଭ କବି ଗଙ୍ଗାଧର ରହୁଥାନ୍ତି ସମ୍ବଲପୁରରେ । କିନ୍ତୁ ସହରର ସାଂସ୍କୃତିକ, ସାହିତ୍ୟିକ ଜୀବନରେ ଅଥବା ବ୍ୟକ୍ତିଗତ ବନ୍ଧୁତା ଯୋଗୁଁ ସାହିତ୍ୟ ଦିଗରେ ପ୍ରେରଣା ସଞ୍ଚାର କରିପାରି କେହି ନଥିଲେ । ଏ ଅବସ୍ଥାରେ ବ୍ରଜମୋହନ ବାବୁଙ୍କ ପତ୍ର ତାଙ୍କ ନିଜ କୀର୍ତ୍ତି ସ୍ମୃତି ପ୍ରତି ତାଙ୍କୁ ସଚେତନ କରିଦେଲା । ସାହିତ୍ୟିକ ସେ ତା ରଚନାର ଗ୍ରାହକ ଖୋଜେ ଏହା ଏକ ସ୍ୱାଭାବିକ ସତ୍ୟ । କବି ଅଭିମନ୍ୟୁ ସାମନ୍ତ ସିଂହାର ଏହି ସତ୍ୟର ଚରମ ଉପଲବ୍ଧି ଯୋଗୁଁ ଲେଖିଥିଲେ—

"ବିବେକୀ ଗ୍ରାହକ କୋଟି କବି ଆୟୁ ଯେଣ
ବର୍ତ୍ତିଥିଲେ କବି କବିତ୍ୱ କି ହେବ ମ୍ଳାନ ।"

ଜଣେ ଯଦି ବିବେକୀ ଗ୍ରାହକ ଅଛନ୍ତି ତାଙ୍କୁ କୋଟି କୋଟି କବିଙ୍କ ପରମାୟୁ ଦେଇ ଚିରଂଜୀବୀ କରି ରଖିବାର ଏ ଭାବନାରେ ସେହି ସତ୍ୟ ହିଁ ପ୍ରତିପାଦିତ ହୋଇଛି । ସେ ଯାହା ହେଉ, ୧୯୧୦ରେ ଗଙ୍ଗାଧରଙ୍କ କବିଜୀବନର ଉତ୍ତର ପର୍ଯ୍ୟାୟର ଯେ ସମାରମ୍ଭ ହେଲା ସେଥିପାଇଁ ବ୍ରଜମୋହନଙ୍କ ପ୍ରେରଣା ତାଙ୍କୁ କାର୍ଯ୍ୟକାରୀ ଶକ୍ତି ଯୋଗାଇଥିଲା ।

## 'କବିତା କଲ୍ଲୋଳ' : ପ୍ରକୃତିର ମୁଗ୍‌ଧ ପ୍ରତିକୃତି

ଅନ୍ତିମ ପର୍ଯ୍ୟାୟର ପ୍ରଥମ ପୁସ୍ତକ କବିତା କଲ୍ଲୋଳ ୧୯୧୮ରେ ପ୍ରକାଶିତ ହେଲା । ଏହା ପାଞ୍ଚୋଟି ଦୀର୍ଘ କବିତା ବା ଖଣ୍ଡକାବ୍ୟର ସଙ୍କଳନ—ବେଦବ୍ୟାସ, ଚନ୍ଦ୍ରରଜନୀ, ବସନ୍ତ ବାସର, ସୋମନାଥ ବିଜୟ ଓ ବର୍ଷାଚିନ୍ତା । ଏ ମଧ୍ୟରୁ ଚନ୍ଦ୍ରରଜନୀ ଓ ବସନ୍ତ ବାସର ପୂର୍ବରୁ ଆଂଶିକ ରଚିତ ହୋଇ ଅପୂର୍ଣ୍ଣ ଥିବା

ବିଷୟ କବିଙ୍କ ପତ୍ରାବଳୀ ମଧ୍ୟରୁ ଜଣାପଡ଼େ । ସେ ଯାହାହେଉ ଏହି କବିତା ସଙ୍କଳନ ମଧ୍ୟ ଦେଇ ତାଙ୍କ କବିଜୀବନର ପ୍ରସିଦ୍ଧି ପର୍ବ ଆରମ୍ଭ ହେଲା । 'ବେଦବ୍ୟାସ' କବିତାରେ ଗାଙ୍ଗପୁର ରାଜ୍ୟର ବେଦବ୍ୟାସ ପର୍ବତ, ଶଙ୍ଖ ଓ କୋଇଲର ମିଳନ ସ୍ଥଳରେ ବ୍ରାହ୍ମଣୀ ନଦୀର ଉତ୍ପତ୍ତି-ଭୂମି, ମହର୍ଷି ବେଦବ୍ୟାସଙ୍କ ଜନ୍ମ-କମ୍ବଦନ୍ତୀ-ଯୁକ୍ତ ବେଦବ୍ୟାସ ତୀର୍ଥ, ପ୍ରସଙ୍ଗକ୍ରମେ ପଶ୍ଚିମାଞ୍ଚଳର ଅପର ବହୁ ପର୍ବତ, ନଦୀ ଓ ତୀର୍ଥ ଏବଂ ଏ ସବୁର କାନନ ସମ୍ପଦ—ବୃକ୍ଷ ପୁଷ୍ପଫଳ ଜୀବ—ସଂକ୍ଷେପରେ ପଶ୍ଚିମ ଓଡ଼ିଶାର ଏହି ଅପୂର୍ବ ସୁନ୍ଦର ତୀର୍ଥର ପ୍ରାକୃତିକ ଛବି ବର୍ଣ୍ଣନାରେ ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଏବଂ ମୁଗ୍ଧ ଅନୁଭବ ରୂପ ନେଇଛି । ସେହିପରି ସମ୍ବଲପୁର ସହରରେ ଥିବା ମହାନଦୀ କୂଳସ୍ଥ ଶିବପୀଠ ସୋମନାଥଙ୍କ ପ୍ରସିଦ୍ଧି ଓ ମହାନଦୀର ଶୋଭା ବର୍ଣ୍ଣନା ସୋମନାଥ ବିଜୟର ଉପଜୀବ୍ୟ । ଚନ୍ଦ୍ରଜନନୀ, ବସନ୍ତବାସର ଓ ବର୍ଷାଚତୁର ବିଷୟବସ୍ତୁ ଏମାନଙ୍କ ନାମରୁ ସୂଚିତ ହୁଏ । ଏ କବିତା ଗୁଡ଼ିକରେ ଗଙ୍ଗାଧରଙ୍କ ଲେଖନୀ ପ୍ରକୃତିର ମନୋରମ ଆଲେଖ୍ୟ ଅଙ୍କନ କରିଯାଇଛି । ଏହାର ବୈଶିଷ୍ଟ୍ୟ ହେଉଛି ରୂପାବିଷ୍ଟ କବିର ମୁଗ୍ଧ ଅନୁଭୂତି । କବିଙ୍କ ନିଜ ଅଭିଜ୍ଞତାର ପରିଧି ମଧ୍ୟରେ ଥିବା ପଶ୍ଚିମ ଓଡ଼ିଶାର ଆଲେଖ୍ୟ ଏ କବିତାଗୁଡ଼ିକର ଅପର ପରିଚୟ ।

## 'ଅଯୋଧ୍ୟା ଦୃଶ୍ୟ' : ବାତ୍ସଲ୍ୟର କରୁଣ ମଧୁର ନିର୍ଝରିଣୀ :

ତିନୋଟି ସର୍ଗରେ ବର୍ଣ୍ଣିତ ଅଯୋଧ୍ୟା-ଦୃଶ୍ୟ ପ୍ରକାଶିତ ହୁଏ ୧୯୦୪ରେ । ପ୍ରଥମେ କବି ଗଙ୍ଗାଧର ଏହାକୁ "ତିନି ଦୃଶ୍ୟ" ରୂପେ କଳ୍ପନା କରିଥିଲେ । ବାସ୍ତବରେ ଏ ଦୃଶ୍ୟ ତ୍ରୟ ରାମାୟଣ କଥାବସ୍ତୁର ଦୁଇଟି ମୁଖ୍ୟ ଅଧ୍ୟାୟକୁ ରୂପ ପ୍ରଦାନ କରିଛି । ପ୍ରଥମଟିରେ ରାମଙ୍କର ଅଭିଷେକ ଆୟୋଜନ ବର୍ଣ୍ଣିତ ହୋଇଛି ଏବଂ ପରିସମାପ୍ତ ହୋଇଛି ରାମଙ୍କର ବନଗମନରେ । ଉଦ୍ଦେଶ୍ୟ, ପିତୃସତ୍ୟ ପାଳନ ନିମିତ୍ତ ଚତୁର୍ଦ୍ଦଶ ବର୍ଷ ବନବାସ । ତୃତୀୟ ଦୃଶ୍ୟର ଉପଜୀବ୍ୟ ଚତୁର୍ଦ୍ଦଶ ବର୍ଷ ପରବର୍ତ୍ତୀ ଅଯୋଧ୍ୟାର ଦଶା ଏବଂ ଅବଶେଷରେ ରାମଙ୍କ ପ୍ରତ୍ୟାବର୍ତ୍ତନ ଓ ରାଜ୍ୟାଭିଷେକ । ନିୟତ ନିୟମରେ ଏ ଉଭୟ ଦୃଶ୍ୟର ଅନ୍ତରାଳରେ ଥିଲା ଯେଉଁ ଅଯୋଧ୍ୟା ଜୀବନ ତହିଁରେ କୌଣସି ସ୍ମରଣୀୟ ଘଟଣା ରାମାୟଣରେ ବର୍ଣ୍ଣିତ ହୋଇନାହିଁ । ରାଜ୍ୟ ଥିଲା, ପ୍ରଜା ଥିଲେ, ଗଜବାଜି ଥିଲେ—ନଥିଲେ ରାମ । ଭ୍ରାତୃଭକ୍ତ ଭରତ ରାମାଜ୍ଞା ନେଇ ତାଙ୍କର ପ୍ରତିନିଧିରୂପେ ରାଜ୍ୟରକ୍ଷା ରୂପ କର୍ତ୍ତବ୍ୟ ସାଧନ କରୁଥିଲେ । ଭରତଙ୍କ ସେ ତ୍ୟାଗପୂତ ଜୀବନର ସୂଚନା ଦେଇଛନ୍ତି କବି ରାମଙ୍କ ପ୍ରତ୍ୟାଗମନ ପାଇଁ ପ୍ରତୀକ୍ଷା କାଳରେ । ଏହି

ଅନ୍ତର୍ବର୍ତ୍ତୀ ଜୀବନ ବର୍ଣ୍ଣନା ପ୍ରସଙ୍ଗରେ ଅଯୋଧ୍ୟା ଜୀବନର କେନ୍ଦ୍ରରେ ଗଙ୍ଗାଧର ଦର୍ଶନ ପାଇଛନ୍ତି ରାମଜନନୀ କୌଶଲ୍ୟାଙ୍କର । ଚତୁର୍ଦ୍ଦଶବର୍ଷ କାଳ ସମସ୍ତ ଅଯୋଧ୍ୟା ରାମସ୍ମରଣ କରୁଥିଲା, ତଥାପି ବ୍ୟସ୍ତଥିଲା ଆପଣାର ଜୀବନଚର୍ଯ୍ୟା ନେଇ; କିନ୍ତୁ ସନ୍ତାନ ବିରହିଣୀ କୌଶଲ୍ୟା ପାଇଁ ରାମଚର୍ଯ୍ୟାହିଁ ଥିଲା ଏକମାତ୍ର କାର୍ଯ୍ୟ । ଦ୍ୱିତୀୟ ସର୍ଗରେ ରାମମାତା କୌଶଲ୍ୟାଙ୍କ ବାତ୍ସଲ୍ୟର ବର୍ଣ୍ଣନା ହେଉଛି ଅଯୋଧ୍ୟା ଦୃଶ୍ୟର ଶ୍ରେଷ୍ଠାଂଶ ।

ଏ ବାତ୍ସଲ୍ୟର ବର୍ଣ୍ଣନାରେ ଗଙ୍ଗାଧର ମାତୃ ହୃଦୟର ଯେଉଁ ଆଲେଖ୍ୟ ଅଙ୍କନ କରିଛନ୍ତି ତାହା ବାତ୍ସଲ୍ୟ କରୁଣର ଅନବଦ୍ୟ ନିଦର୍ଶନ । ସରଳ ନିରଳଂକୃତ ପଦସମ୍ଭାର ମଧ୍ୟରେ ଏକ ବ୍ୟଥାପୀଡ଼ିତ ମାତାର ସକଳ କାରୁଣ୍ୟ ସତେ ଯେପରି ଏକ ତପ୍ତ ଅଶ୍ରୁର ନିର୍ଝରିଣୀ ପରି ଅବାରିତ ଧାରାରେ ବହି ଯାଉଛି । କବିଙ୍କ କଥାରେ—

"ଶେଷ ଜୀବନରେ ପାଇ କୁମାର ରତନ
କରିଥିଲି ପ୍ରାଣଠାରୁ ଅଧିକ ଯତନ ।
ତାକୁ ବନେ ପେଷି ମୋତେ ରଖାଇଛୁ ଘରେ,
ହୋଇଛୁ ପୁତ୍ରର ଏହା ବିଧି ବିବେକରେ ।
ଦେହ ମାତ୍ର ଘରେ ଅଛି ତୋଠାରେ ଜୀବନ,
ବେନି ନାବେ ପାଦ ଦେଇ ମରୁଅଛି ମନ ।
ମରୁଅଛି ମନ କିନ୍ତୁ ପାରୁନାହିଁ ମରି,
କମ୍ପା ବୁଡ଼ିଯାଉନାହିଁ ମୋ ଜୀବନତରୀ ।"

ପ୍ରକୃତିର ଋତୁ ପର୍ଯ୍ୟାୟରେ ଋତୁର ପରିବର୍ତ୍ତନ ଘଟେ;—ବନବାସୀ ରାମର ସୁଖଦୁଃଖ ଚିନ୍ତାରେ କାତର ହୋଇ ଉଠେ ମାତାର ଅନ୍ତର । ବର୍ଷାର ଧାରା ସଙ୍ଗେ ସଙ୍ଗେ "କୌଶଲ୍ୟା ନୟନୁ ଝରେ ଲୋତକ ଆସାର ।" ମେଘ, ବର୍ଷା, ବିଜୁଳି, ଘଡ଼ଘଡ଼ିରେ ଯେତେବେଳେ "ଶିଶୁଥାଏ ଭୟେ ମାତା କୋଳକୁ ଆଦରି" ସେତେବେଳେ ରାମଜନନୀ ହୃଦୟ—

"ବନେ ବନେ ଭ୍ରମୁଥାଏ ଆକୁଳ ଅଥୟ ।
କେତେବେଳେ ଭେଟେ ରାମ ପର୍ବତ କନ୍ଦରେ
କେତେବେଳେ ବନେ ପର୍ଣ୍ଣକୁଟୀର ଭିତରେ ।"

କେବେ ପୁଣି, ଉପବନରେ ଅଥବା ଫୁଲ ତୋଳିବା ଛଳରେ ଆକୁଳ ମନରେ—

"ପୁଷ୍ପ ତୋଳି ତୋଳି ଯାନ୍ତି ବହୁଦୂର ସ୍ଥଳ,
ଗମ ମୋର ଅସୁଥିବ ଅବା ବୋଲି ଖଳ ।
ଯେଉଁ ମାର୍ଗେ କରିଥିଲେ ଶ୍ରୀରାମ ଗମନ
ସେହି ମାର୍ଗ ଦେଖିବାକୁ ସବୁବେଳେ ମନ ।"

ଅନ୍ୟତ୍ର ଆତ୍ମଦୋଷ-ଦର୍ଶିନୀ ମାତାର ବଶ୍ୱରରେ ପୂର୍ବଜନ୍ମକୃତ ପାପର ଚନ୍ତା ଜାଗିଉଠେ ।—

"ପୂର୍ବଜନ୍ମେ କରିଥିଲି କେତେ କେତେ ପାପ,
କା ପୁତ୍ର ଛଡାଇ ତାକୁ ଦେଇଥିଲି ତାପ ।
ପକ୍ଷୀର ଶାବକ ଅବା ଆଣିଥିଲି ଧରି,
କାନ୍ଦୁଥିଲା ପକ୍ଷିଣୀ ତା କୁମରକୁ ସ୍ମରି ।
କବା ଗାଈଠାରୁ ଭିନ୍ନ କରିଥିଲି ବତ୍ସ,
ରବ ରବ ଫାଟୁଥିଲା ସେ ଗାଈର ବକ୍ଷ ।

ଏହିପରି 'ଅଯୋଧ୍ୟା ଦୃଶ୍ୟ'ର ଏହି ଦ୍ୱିତୀୟ ସର୍ଗରେ ଉପଜୀବ୍ୟ ହୋଇଛି ରାମ-ମାତାର ବାତ୍ସଲ୍ୟ-କାରୁଣ୍ୟ । ତୁଏତ ରାମବିରହୀ ସମସ୍ତ ଅଯୋଧ୍ୟାର ମନୋବେଦନାର ଏହା ପ୍ରତୀକ । ପଢୁ ପଢୁ ମନ୍ଦଭିକୁ ଆସେ "କଳାମାଣିକରେ", "ଉଠିଲୁ ଏଡ଼େ ବେଗି" ଅଥବା "ଆରେ ବାବୁ ଶ୍ୟାମଘନ" । କିନ୍ତୁ ସେହି ପୂର୍ବସୂରିଙ୍କ କବିତା ଗୁଡ଼ିକ କାଳଜୟୀ ହେବାରେ ତାଙ୍କ ଅନ୍ତରର ନିବିଡ ଅନୁଭବ ହିଁ ଯେପରି ପ୍ରମାଣ, ଗଙ୍ଗାଧରଙ୍କ ରଚନାର ପ୍ରାଣ-ପ୍ରାଚୁର୍ଯ୍ୟ ମଧ୍ୟ ତାଙ୍କ ଅନୁଭୂତିର ଆନ୍ତରିକତା ଯୋଗୁଁ ସମ୍ଭବ ହୋଇଛି । ବାତ୍ସଲ୍ୟ ଚିତ୍ରଣରେ ଗଙ୍ଗାଧରଙ୍କ ଲେଖନୀର ଏହି ସିଦ୍ଧି ତାଙ୍କ ପ୍ରସିଦ୍ଧ କାବ୍ୟ 'ପ୍ରଣୟ ବଲ୍ଲରୀ'ର ଚତୁର୍ଥ, ଷଷ୍ଠ ଓ ସପ୍ତମ ସର୍ଗମାନଙ୍କରେ ଏବଂ 'ତପସ୍ୱିନୀ' କାବ୍ୟର ୨ୟ, ୪ର୍ଥ, ୫ମ, ୧୦ମ ଏବଂ ୧୧ଶ ସର୍ଗ ମାନଙ୍କରେ ଏକ ସମାନ୍ତରାଳ ଓ ସହାୟକ ରସଧାରା ରୂପେ ରହି ମୁଖ୍ୟ ରସର ପ୍ରଭାବକୁ ପ୍ରଗାଢ଼ କରିବାରେ ସଫଳ ହୋଇଛି ।

## 'ଉତ୍କଳ ଲକ୍ଷ୍ମୀ' : କାବ୍ୟର ଉତ୍କର୍ଷ ଓ "ନୂତନ ମାର୍ଗ"

୧୯୧୪ରେ ପ୍ରକାଶିତ ଅପର କାବ୍ୟ ହେଉଛି ଉତ୍କଳ ଲକ୍ଷ୍ମୀ । ଦ୍ୱିତୀୟ ଭାଗରେ ଏହି କାବ୍ୟ ସଂପର୍କରେ ପରିଚୟ ଦିଆଯାଇଛି ଏବଂ ଗଙ୍ଗାଧର ସ୍ୱୟଂ ଏ କାବ୍ୟର ଭାବ, ଯୋଜନା ତଥା କାବ୍ୟ-ବିନ୍ୟାସକୁ ଏକ "ନୂତନ ମାର୍ଗ" ବୋଲି ନାମିତ କରିବାର ସୂଚନା ମଧ୍ୟ ଦିଆଯାଇଛି । ବାସ୍ତବରେ ସମଗ୍ର ଓଡ଼ିଆ କାବ୍ୟର ଇତିହାସରେ ପ୍ରେମ-ସମ୍ପର୍କ ନ ଥିବା କାବ୍ୟମାନଙ୍କର ସଂଖ୍ୟା ଅତ୍ୟନ୍ତ ଅଳ୍ପ । ଷୋଡ଼ଶ ଶତାବ୍ଦୀର ଐତିହାସିକ କାବ୍ୟ 'କାଞ୍ଚୀ ଓ କାବେରୀ' ଏବଂ ଅଷ୍ଟାଦଶ ଶତାବ୍ଦୀର ସମର କାବ୍ୟ 'ସମର ତରଙ୍ଗ' ବ୍ୟତୀତ ରାଧାନାଥଙ୍କ 'ଚିଲିକା', 'ଦରବାର' ଏବଂ 'ମହାଯାତ୍ରା' ହିଁ ମୁଖ୍ୟତଃ ଦୃଷ୍ଟାନ୍ତ ରୂପେ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ହେବେ । ଏମାନଙ୍କର ସ୍ୱଦେଶାନୁରାଗର ସ୍ୱର ଖୁବ୍ ସ୍ପଷ୍ଟ । ଦେଶର ଶୌର୍ଯ୍ୟ, ବୀର୍ଯ୍ୟ ଏବଂ ଐତିହ୍ୟ ତଥା ରାଜସମୃଦ୍ଧିର ଉପଜୀବ୍ୟ ନେଇ ପ୍ରଥମ କାବ୍ୟଦ୍ୱୟ ବିଶେଷ ଗୌରବର ଅଧିକାରୀ । ଏମାନଙ୍କର ବି ଥିଲା ନୂତନତା । ରୀତିକାଳୀନ ପ୍ରେମ କାବ୍ୟ ଅଥବା ପୌରାଣିକକାବ୍ୟରୁ ଏମାନଙ୍କ ଝଙ୍କାରର ପାର୍ଥକ୍ୟ ସ୍ପଷ୍ଟ । ପୁନଶ୍ଚ ଆଧୁନିକ ପ୍ରକୃତିକାବ୍ୟ 'ଚିଲିକା' ଏକ ପ୍ରଥମ ସଫଳ ଓ ସ୍ୱତନ୍ତ୍ର ପଦକ୍ଷେପ ଏବଂ ଭାରତୀୟ ଜୀବନର ଐତିହ୍ୟ ଓ ସଂସ୍କୃତିର ବିବର୍ତ୍ତନ କ୍ଷେତ୍ରରେ ଏକ ସୁନ୍ଦର ଜୟଯାତ୍ରା ପରିକଳ୍ପିତ ହୋଇଛି ଅସଂପୂର୍ଣ୍ଣ 'ମହାଯାତ୍ରା' କାବ୍ୟରେ । ଶେଷରେ 'ଦରବାର' କାବ୍ୟର ନୂତନତା ମୂଳରେ ରହିଛି ଏକ ବ୍ୟାପକ ଜୀବନର ଅବବୋଧ ସହ ତାହାର ଦାର୍ଶନିକ ପ୍ରତିକାର ପାଇଁ ଆହ୍ୱାନ । ଏ ଦୃଷ୍ଟିକୋଣରେ ଉପଜୀବ୍ୟ ତଥା ଶୈଳୀର ନୂତନତା ମହତ୍ତ୍ୱପୂର୍ଣ୍ଣ । ସେହିପରି ଅନ୍ୟ ଏକ ବ୍ୟତିକ୍ରମ 'ଉତ୍କଳ ଲକ୍ଷ୍ମୀ' । ଏ କାବ୍ୟରେ ଥିଲା ପ୍ରକୃତି, ସମଗ୍ର ଓଡ଼ିଶାର ଭାଷା, ଐତିହ୍ୟ, କୀର୍ତ୍ତି ଓ ସଂସ୍କୃତିର ଏକ ଚରିତ୍ରୀଭୂତ ବ୍ୟକ୍ତରୂପ ଏବଂ ତନ୍ମଧ୍ୟରେ ସମକାଳୀନ ବାସ୍ତବ ଜୀବନ ସ୍ପନ୍ଦନର ବ୍ୟଞ୍ଜନା; ପୁନଶ୍ଚ ଥିଲା ଆଧୁନିକ କାବ୍ୟ-କାଳରେ ରାଧାନାଥଙ୍କ ଲେଖନୀ ମୂଳରେ ଏହାର ସାରସ୍ୱତ ପ୍ରତିଷ୍ଠାର ଉଦ୍‌ଘାଟନ ଯୋଗୁଁ ଅକୁଣ୍ଠ ପ୍ରଶଂସା ସହିତ ସେହି ଧାରାର ସମ୍ପୂର୍ଣ୍ଣତା ବିଧାନ କଲେ ଉଦ୍ୟମ ଲାଗି ଆହ୍ୱାନ । ଏ ମାର୍ଗ ଏକ ବ୍ୟତିକ୍ରମ । କାବ୍ୟ-ଶିଳ୍ପ ମଧ୍ୟରେ ସ୍ୱଦେଶ ଭାବନାର ସ୍ତିମିତ ସ୍ତରରୁ ଉଠି 'ଜାତୀୟତା'ର ଉଚ୍ଛଳ ସ୍ରୋତରେ ସନ୍ତରଣ କରିବାର ଆଦ୍ୟ-ପ୍ରୟାସ ଏହାର ବୈଶିଷ୍ଟ୍ୟ ।

## 'ପ୍ରଣୟ ବଲ୍ଲରୀ' : ଅନୁବାଦରେ ଅଭିନବ କାବ୍ୟ :

ଗଙ୍ଗାଧରଙ୍କ ପ୍ରତିଭାର କର୍ଷଣଜନିତ ପରବର୍ତ୍ତୀ ଫଳ ହେଉଛି

୧୯୧୪-୧୫ରେ ପ୍ରକାଶିତ 'ପ୍ରଣୟ ବଲ୍ଲରୀ' । ଏ କାବ୍ୟର ମଙ୍ଗଳାଚରଣରେ ଗୁରୁବନ୍ଦନା କରି କବି ଲେଖିଛନ୍ତି :

''ଜୟ ବେଦବ୍ୟାସ ଜୟ କାଳିଦାସ
ଭାରତୀ ପ୍ରିୟ ନନ୍ଦନ
ତୁମ୍ଭେ ଜ୍ଞାନଗୁରୁ କବିମଣ୍ଡଳୀର
ଲଲାଟ-ଶୋଭା-ଚନ୍ଦନ ।''

ବେଦବ୍ୟାସ ରଚିତ ମହାଭାରତରୁ ଗୃହୀତ ଦୁଷ୍ୟନ୍ତ-ଶକୁନ୍ତଳା ଉପାଖ୍ୟାନକୁ କବି କାଳିଦାସ ନାଟକ ରୂପ ଦେଇଥିଲେ ତାଙ୍କର ବିଶ୍ୱ ପ୍ରସିଦ୍ଧ ନାଟକ 'ଅଭିଜ୍ଞାନ ଶାକୁନ୍ତଳମ୍'ରେ । ସେହି ନାଟକର ଅନୁସରଣ କ୍ରମେ ତାହାର ଅନେକ ଶ୍ଳୋକ-ସଂଳାପର ଅନୁବାଦ ସହିତ ସ୍ୱକୀୟ ନୂତନ ସଂଯୋଜନକୁ ଅଙ୍ଗୀଭୂତ କରି ମେହେରଙ୍କ କାବ୍ୟ ପରିକଳ୍ପିତ ହୋଇଥିଲା ।

ଗଙ୍ଗାଧର ବଙ୍ଗୀୟ ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ କୃତ କାଳିଦାସ ଗ୍ରନ୍ଥାବଳୀର ଅନୁବାଦ ଅଧ୍ୟୟନ କରିଥିଲେ ତଥା ମୂଳସଂସ୍କୃତ ମଧ୍ୟ ପାଠ କରିଥିଲେ । ତାହାଛଡ଼ା ଜର୍ମାନ ମହାକବି ଗେଟେ ଶକୁନ୍ତଳାର ଶିଳ୍ପ-ସୌନ୍ଦର୍ଯ୍ୟ ଉପରେ ଯେଉଁ ମନ୍ତବ୍ୟ ପ୍ରଦାନ କରିଥିଲେ ତାହା ପୂର୍ଣ୍ଣତଃ ଅବଧାରଣ କରିଥିଲେ । ସେଥିଯୋଗୁଁ ସେ ପ୍ରଥମରୁ ଏହି ନାଟକ-ବର୍ଣ୍ଣିତ ଉପାଖ୍ୟାନରେ ଏକ ପ୍ରସ୍ଫୁଟ-ଲତିକାର କ୍ରମବର୍ଦ୍ଧିଷ୍ଣୁ ଜୀବନର ଗତି ପରିଚୟ ଉପଲବ୍ଧି କରି ତାଙ୍କ କାବ୍ୟର ନାମ ରଖିଲେ 'ପ୍ରଣୟ ବଲ୍ଲରୀ' । ମୂଳନାଟକର ଅଙ୍କ ସଂଖ୍ୟା ସାତ; ତଦନୁସରଣ କ୍ରମେ କାବ୍ୟରେ ସର୍ଗ ସଂଖ୍ୟା ସାତ । ମୂଳ ନାଟକର ଅଙ୍କମାନଙ୍କର ସ୍ଥାନ, କାଳ ତଥା ସ୍ଥୂଳ ବିଷୟ-ବିନ୍ୟାସ କାବ୍ୟରେ ଅପରିବର୍ତ୍ତିତ ରହିଛି । ସ୍ଥୂଳତଃ ଚରିତ୍ର, ଘଟଣାବଳୀର ନାମ ଓ ପ୍ରକାର ସମସ୍ତ ହିଁ ମୂଳର ଅନୁରୂପ ହୋଇଥିବାରୁ ଏହାକୁ ଅନୁବାଦ କହିବାରେ ବାଧା ନାହିଁ । କିନ୍ତୁ ଏହା ଆକ୍ଷରିକ ଅନୁବାଦ ନୁହେଁ । ଏହାକୁ ମର୍ମାନୁବାଦ ମଧ୍ୟ କୁହାଯାଇ ପାରିବ ନାହିଁ, କାରଣ ଦ୍ୱିତୀୟ, ତୃତୀୟ, ପଞ୍ଚମ, ଷଷ୍ଠ ଓ ସପ୍ତମ ସର୍ଗମାନଙ୍କରେ ବିଷୟବସ୍ତୁର ପରିବେଷଣରେ ସମ୍ପୂର୍ଣ୍ଣ ଅଭିନବ ଯୋଜନା କରି ମୂଳ ସହିତ ତାହାର ସାମଞ୍ଜସ୍ୟ ରକ୍ଷା କରିଛନ୍ତି । ଫଳରେ ମୂଳ ସଂସ୍କୃତ ନାଟକର ଶ୍ଳୋକ ଏବଂ ସଂଳାପର ପ୍ରାୟ ଅର୍ଦ୍ଧେକ ସଂପୂର୍ଣ୍ଣ ଭାବେ ପ୍ରତ୍ୟାଖ୍ୟାତ ହୋଇଛି ।

## 'ପ୍ରଣୟ ବଲ୍ଲରୀ'ର ବିଷୟବସ୍ତୁ :

ହସ୍ତିନାପୁର ଦୁଷ୍ମନ୍ତ ମୃଗୟା ଉଦ୍ଦେଶ୍ୟରେ କଣ୍ୱ ଆଶ୍ରମ ନିକଟବର୍ତ୍ତୀ କାନନରେ ପ୍ରବେଶ କରି ଏକ ମୃଗର ପଶ୍ଚାଦ୍ଧାବନ କରୁଥିବା ବେଳେ ଆଶ୍ରମର ଦୁଇ ଜଣ ତପସ୍ୱୀ ଚିତ୍କାର କରି କହିଉଠିଲେ, "ମାରନା, ମାରନା, ଆଶ୍ରମ ମୃଗ ଏ ବଧ ନୁହେଁ ଗ୍ରାମ୍ୟକର" । ଏହା ଶୁଣି ରାଜା ଅସ୍ତ୍ର ସମ୍ବରଣ କରି ଏବଂ ରଥ ଅଟକାଇ ତପସ୍ୱୀମାନଙ୍କ ପରାମର୍ଶ ବୁଝିଲେ କୁଳପତି କଣ୍ୱ ତୀର୍ଥ ଉଦ୍ଦେଶ୍ୟରେ ବିଦେଶ ଯାତ୍ରା କରିଥିଲେ । ଆଶ୍ରମରେ ଥିଲେ ମୁନିନନ୍ଦିନୀ ଶକୁନ୍ତଳା ଏବଂ ଅନ୍ୟାନ୍ୟ ତାପସ ତାପସୀ । ରାଜା ସାଧାରଣ ଭଦ୍ରବ୍ୟକ୍ତିର ପରିଚ୍ଛଦରେ ଆଶ୍ରମ ଦର୍ଶନ କୌତୂହଳ ନେଇ ପ୍ରବେଶ କଲେ । ତାଙ୍କ ଆଦେଶରେ ତାଙ୍କର ଅନୁଗାମୀ ସୈନ୍ୟ ଓ ଗଜବାଜି ଶିବିର ପକାଇ ବିଶ୍ରାମ ନେଲେ । ତପୋବନ ସଂଲଗ୍ନ ଉଦ୍ୟାନରେ ପ୍ରାୟ ସମାନ ବୟସର ତିନୋଟି ଯୁବତୀ ଆଶ୍ରମ ପାଦପ ଗୁଡ଼ିକର ଯତ୍ନ ନେବାରେ ବ୍ୟାପୃତ ଥିଲେ । ଜଳସେଚନ ନିମିତ୍ତ ଜଳ ଆହରଣ କାଳରେ ଯୁବତୀ ତିନୀଙ୍କର ସ୍ୱଚ୍ଛନ୍ଦ ଏକାନ୍ତରେ ହାସ-ପରିହାସ-ସବଳିତ ଜୀବନର ଆନନ୍ଦ ଅଲକ୍ଷ୍ୟରେ ରହି ଉପଭୋଗ କରୁଥିଲେ ରାଜା ଦୁଷ୍ମନ୍ତ । ସେମାନଙ୍କର ନାମ ସେ କଥୋପକଥନରୁ ଜାଣିଲେ ଶକୁନ୍ତଳା, ପ୍ରିୟମ୍ବଦା ଓ ଅନସୂୟା । ପରିଚୟ ଯାହା ଜଣାଗଲା ତପସ୍ୱୀ ଶକୁନ୍ତଳା ହେଉଛନ୍ତି କଣ୍ୱନନ୍ଦିନୀ ଏବଂ ଅନ୍ୟମାନେ ତାହାର ସଖୀ ।

ଏହି ସମୟରେ ଜଳସେଚନ ଫଳରେ ବିଚଳିତ ହୋଇ ଏକ ଭ୍ରମର ଆସି ଶକୁନ୍ତଳାର ମୁଖ ଦଂଶନ କରିବାରୁ ମୋଥିରେ ବ୍ୟଥିତା ହୋଇ ଶକୁନ୍ତଳା ଚିତ୍କାର କରି ସଖୀମାନଙ୍କ ସାହାଯ୍ୟ ପାଇଁ ଆହ୍ୱାନ କଲା । ଚତୁରା ପ୍ରିୟମ୍ବଦା ସେତେବେଳେ ଛଳେଇ କହିଲା, "ପୁରୁରାଜେ୍ୟ ପୁଣି ତପୋବନ ମଧ୍ୟେ ମଧୁବ୍ରତର ( ମହୁଆ ଲମ୍ପଟର ) ଉତ୍ପାତ ? ସେ କଣ ଦୁଷ୍ମନ୍ତ ପ୍ରତାପ ଜାଣେ ନାହିଁ ।" ଏହି ଅବସରରେ ରାଜା ସହସେ ଅବା ଉତ୍ତର ଦେଇଭଳି ଦେଖାଦେଇ କହିଲେ, "ପୁରୁବଂଶୀୟ ରାଜାଙ୍କ ରାଜତ୍ୱରେ ଭୟ ନାହିଁ । ଅବଳା ଉପରେ ଅତ୍ୟାଚାର କଦାପି ସହ୍ୟ କରାଯିବ ନାହିଁ ।" ଏ ପ୍ରଶ୍ନରେ ଲଜ୍ଜିତ ହୋଇ ପ୍ରିୟମ୍ବଦା କହିଲା, "ନା ମହାଶୟ ! ସେପରି କିଛି ଘଟିନାହିଁ । ଆମ ସଖୀର ଭ୍ରମର ପୀଡ଼ା ମାତ୍ର ଘଟଣା ।" ଏହି ପ୍ରଥମ ଦର୍ଶନରେ ଉଭୟ ରାଜା ଓ ଶକୁନ୍ତଳା ପରସ୍ପର ପ୍ରତି ପ୍ରେମାକୃଷ୍ଟ ହେଲେ । ତା'ପରେ କନ୍ୟାମାନେ ଯଥୋଚିତ ଅତିଥି ସତ୍କାର କରିବା ପରେ ଏବଂ ସମସ୍ତେ ଉପବେଶନ କଲାପରେ ରାଜାଙ୍କ ପ୍ରଶ୍ନରେ

ପ୍ରିୟମ୍ବଦା ପ୍ରକାଶ କଲା ଯେ ବିଶ୍ୱାମିତ୍ରଙ୍କ ତପୋଭଙ୍ଗ-କାରିଣୀ ମେନକା ଅପ୍ସରାର କନ୍ୟା ଏହି ଶକୁନ୍ତଳା । ରାଜା ଜାଣୁ ପରିଚୟ ଦେଇଥିଲେ ଯେ ସେ ଜଣେ ପୁରୁବଂଶୀ । ଶକୁନ୍ତଳାର ହାବଭାବ ମଧ୍ୟରେ ରାଜା ସ୍ପଷ୍ଟଭାବେ ଲକ୍ଷ୍ୟ କରିଥିଲେ ଯେ ତାର ସରଳ ମନରେ ପ୍ରେମର ପ୍ରଥମ ରେଖାପାତ ହୋଇଛି । ଠିକ୍ ଏହି ସମୟରେ ଏକ ବନ୍ୟଗଜର ଉତ୍ପାତ ନେଇ ଚିତ୍କାର ଶୁଣିବାରୁ ରାଜା ବ୍ୟସ୍ତ ହୋଇ ଉଠିଲେ । ଆପଣାର ଶ୍ରୀକରରୁ ଏକ ରତ୍ନମୁଦ୍ରିକା କାଢି ତହିଁରେ ଶକୁନ୍ତଳାର ଅଙ୍ଗୁଳି ମଣ୍ଡନ କଲେ ଏବଂ ପୁନର୍ଦର୍ଶନର ଆଶା ଦେଇ ଦ୍ରୁତପଦରେ ନିର୍ଗତ ହେଲେ । କୌତୂହଳାବିଷ୍ଟ ସଖୀଦ୍ୱୟ ଦେଖିଲେ "ଦୁଷ୍ମନ୍ତ ନିବଣ୍ଡି ଧରିଅଛି ସେହି ନବପ୍ରେମ ନିଦର୍ଶନ ।" ଅପୂର୍ବ ପ୍ରେମ-ପୁଲକରେ ପ୍ରାୟ ପ୍ରାଣ-ଅନୁଭବ-ଶୂନ୍ୟ ଅବସ୍ଥାରେ ଯାଉଁ ଯାଉଁ ସଖୀମାନଙ୍କୁ କୁରୁବକ କଣ୍ଟା ଗଳି ଯିବାର ଛଳନା କରି ଦୁଷ୍ମନ୍ତଙ୍କ ପ୍ରତି ପଶ୍ଚାତ୍ ଦୃଷ୍ଟିପାତ ଦ୍ୱାରା ଶକୁନ୍ତଳା ଏ ପ୍ରେମକୁ ଅଭ୍ୟର୍ଥନା କରିଗଲା । କବିଙ୍କ କଥାରେ ପ୍ରଣୟ-ବୀଜର ଅଙ୍କୁରୋଦ୍‌ଗମ ହେଲା— "ଜନ୍ମିଗଲା ବଳେ ଅବଳା ଜୀବନେ ନବୀନ ପ୍ରଣୟାଙ୍କୁର ।"

ଦ୍ୱିତୀୟ ସର୍ଗରେ କବି ବର୍ଣ୍ଣନା କରିଛନ୍ତି ପ୍ରେମିକ ରାଜାଙ୍କ ମନରେ ପ୍ରେମ ଘଟିତ ଆନ୍ଦୋଳନ । ହସ୍ତିନାର ରାଜା ସେ; ତପୋବନରେ ସେ ଯେଉଁ ସ୍ୱାଚ୍ଛନ୍ଦ୍ୟ ପ୍ରକାଶ କଲେ ତାହା କାଳେ ଲୋକଚକ୍ଷୁରେ ଗର୍ହିତ ହେବ ବୋଲି ବିବେକ ଆଣିଦେଲା ଆଶଙ୍କା । ଏ ପ୍ରସଙ୍ଗରେ ଶକୁନ୍ତଳା ପ୍ରଦର୍ଶନ କରିଥିବା ସମସ୍ତ ଇଙ୍ଗିତର ଆଲୋଚନା କରି ରାଜା ଆପଣାର ବିବେକକୁ ଦୋଷମୁକ୍ତ କଲେ । କୁଳପତିଙ୍କ ଅନୁପସ୍ଥିତିରେ ରାଜାଙ୍କ ଆଚରଣର ଅଶାଳୀନତା ମଧ୍ୟ ମିଥ୍ୟା ପ୍ରତିପନ୍ନ ହେଲା,—କାରଣ ବିବେକୀ ତପସ୍ୱୀ କଣ୍ୱ ମହର୍ଷିଙ୍କ ଉଦ୍ବ୍ୟଞ୍ଜନ ଅବଶ୍ୟ ସ୍ୱୀକାର କରିବ ଯେ "ସ୍ୱାଧୀନ ଯୁବତୀ ସ୍ୱାଧୀନ ମନରେ କରିଛି କର ଅର୍ପଣ"; ତେଣୁ ଏହା ଦୋଷାବହ ନୁହେଁ । ଏହି ଅନୁଚିନ୍ତା ରାଜାଙ୍କୁ କରିଦେଲା ଶକୁନ୍ତଳା-ମୟ । ପକ୍ଷାନ୍ତରେ ମଧ୍ୟାହ୍ନ ସନ୍ଧ୍ୟାର ଆହ୍ୱାନରେ କୁଟୀର ଗାମିନୀ ଶକୁନ୍ତଳା ବାରଂବାର ଚୁମ୍ବୁଥାଏ ମୁଦ୍ରିକାକୁ—ବାରଂବାର ସ୍ମରଣ କରୁଥାଏ ରାଜାଙ୍କ କର-ସ୍ପର୍ଶ ଜନିତ ପୁଲକ ଆବେଗ । ସତେ କି ସେ ପୁଣି ଆସିବେ ! କି ମଧୁର ସେ ରୂପ, କି କର୍ଣ୍ଣରସାୟନ ତାଙ୍କ ସୁଧାକିରା ବଚନ-ମାଧୁରୀ ! ଅନ୍ୟମନସ୍କତା କର୍ତ୍ତବ୍ୟ କାର୍ଯ୍ୟ ପ୍ରତି ଅମନୋଯୋଗିତା ସୂଚାଇ ଦେଉଥାଏ "କାମିନୀ"— ମାନ । କୌଶଳୀ ପ୍ରିୟଂବଦା ବୃଦ୍ଧା ତପସ୍ୱିନୀ ଗୌତମୀଙ୍କୁ ଜଣାଇଲା, "ହସ୍ତିନାରାଜ ଆସିଛନ୍ତି; ମହର୍ଷିଙ୍କ ଅନୁପସ୍ଥିତିରେ ତାଙ୍କ ସତ୍କାର କରିବ କିଏ ?" ସରଳା ଗୌତମୀ

ଦୁଷ୍ମନ୍ତ କହିଲେ—"ଜାଣ ଶକୁନ୍ତଳା ଅଟଇ ବିଶୁଦ୍ଧ ଋଷି ସ୍ୱଭାବର ସନ୍ତତ, ନିଜେ ପାଦ ଧୋଇ ଅର୍ଚ୍ଚନେ ତୋଷିବ ଋଷି ସ୍ୱଭାବର ଭୂପତି ।" ନିଜ ଅଲକ୍ଷ୍ୟରେ ଗୌତମୀ ସ୍ୱୟଂ ସତେ ଯେପରି ଶକୁନ୍ତଳାର 'ଋଷି ସ୍ୱଭାବ'କୁ ସ୍ୱୀକୃତି ଜଣାଇ ଦେଲେ । ଚତୁରା ପ୍ରିୟମ୍ବଦା ଶକୁନ୍ତଳାକୁ ଗମ୍ଭୀର ସ୍ୱରେ ଶୁଣାଇ ଦେଲା—"ସଖି, ମାଙ୍କ ଉପଦେଶ ମନେରଖ ।" ପ୍ରଣୟ-ବଲ୍ଲରୀର ଏହା ବିକଶିତ ଦ୍ୱିପର୍ଣ୍ଣିତ ଅବସ୍ଥା । କବିଙ୍କ କଥାରେ :

"ପ୍ରିୟ ଦରଶନ ପ୍ରିୟ ଦରଶନ ଆଶା-ଆସାରେ ପ୍ଲାବିତ
ହେବାରୁ ହୃଦୟେ ପ୍ରଣୟ ପଲ୍ଲବ ପଟଳ ହେଲା ସଜ୍ଜିତ ।

'ପ୍ରଣୟାଙ୍କୁର' ଓ 'ପ୍ରଣୟ ପଲ୍ଲବ' ପରେ ତୃତୀୟ ସର୍ଗର ନାମକରଣ କଲେ କବି 'ପ୍ରଣୟ ପ୍ରସୂନ' ।

ମାଲିନୀ ନଦୀତୀରସ୍ଥ ନିକୁଞ୍ଜ ମଧ୍ୟରେ ଶୀତଳ-ଛାୟା-ବିହାରିଣୀ ସଖୀତ୍ରୟଙ୍କୁ ପୁନଶ୍ଚ ଆବିଷ୍କାର କଲେ ରାଜା ତରୁ ଅନ୍ତରାଳରୁ । ନାରୀକଣ୍ଠର ମଧୁର ସଙ୍ଗୀତ ତାଙ୍କୁ ଆମନ୍ତ୍ରଣ କରିଥିଲା । ଗୀତରତ ପ୍ରିୟଂବଦା ବ୍ୟସ୍ତ ଥିଲା ପୁଷ୍ପମାଳା ଗ୍ରନ୍ଥନରେ ; ନିକଟରେ ଶାୟିତା ଶକୁନ୍ତଳା ଆବେଗ-କାତର, ଚିନ୍ତା-ବିଭୋର, "ବାମହସ୍ତନ୍ୟସ୍ତଗଣ୍ଡା" । ଅନସୂୟା ତା'ର କେଶରେ କର୍ଣ୍ଣଯୁଗଳରେ ଖଞ୍ଜି ଦେଉଥିଲା କୁସୁମ-ଭୂଷଣ । ପ୍ରିୟଂବଦାର ଗୀତ ଶେଷରେ ଅନସୂୟାର ଗୀତ ଆରମ୍ଭ ହେଲା । ଏ ଉଭୟ ଗୀତରେ ରୂପକ ଛଳରେ ଥିଲା ସେହି ପୂର୍ବ ଅବସର ପ୍ରଣୟ-ଲୀଳା । ଅନସୂୟାର ଗୀତ ଶେଷରେ ଥିଲା, "ଆସ ମୋ ସଖୀର ସଗୁଣ ଦେବତା ।" ସେହି ଅବସରରେ ଚମକାଇଲା ଭଳି କହିଉଠୁଛି ପ୍ରିୟଂବଦା, "ବିଦ୍ୟୁତ ବେଗରେ ଆସିଲେଣି ନୃପ ତୋ ଦର୍ଦ୍ଦୁରବର ସ୍ୱରେ ।" ସେତେବେଳେ "ଆସିଲେଣି ନୃପ" ପଦଯୋଜନାର ଅନୁସରଣରେ ନାଟକୀୟ ଭାବେ ପ୍ରବେଶ କରିଛନ୍ତି ରାଜା, ଏବଂ ଶକୁନ୍ତଳା ତାଙ୍କୁ ଦେଖି ପ୍ରକୃତିସ୍ଥା ହୋଇ ଉଠିଛି । ତା'ପରେ ଶକୁନ୍ତଳା କରିଛି ରାଜାଙ୍କ ପାଦ ପ୍ରକ୍ଷାଳନ, ପଲ୍ଲବାସନ ଗ୍ରହଣ ପରେ ଅତିଥିଙ୍କ ଗଳାରେ ପୁଷ୍ପମାଲ୍ୟ ସମର୍ପଣ କରି ଶକୁନ୍ତଳା ନିଜକୁ କୃତାର୍ଥ ମଣିଛି । ସୁରସପୂର୍ଣ୍ଣ ଉକ୍ତି ପ୍ରତ୍ୟୁକ୍ତି ମଧ୍ୟରେ ରାଜା ଶକୁନ୍ତଳାକୁ ସ୍ୱୀକାର କରିଛନ୍ତି ଏବଂ ତା'ର ଗର୍ଭ-ସନ୍ତାନ ତାଙ୍କ ଉତ୍ତରାଧିକାରୀ ହେବ ବୋଲି ପ୍ରକାଶ କରିଛନ୍ତି । କୌଶଳରେ ସଖୀଦ୍ୱୟ

ଆପଣାକୁ ଅପସାରିତ କରିନେବା ପରେ ରାଜା ଏବଂ ଶକୁନ୍ତଳାର ଦାମ୍ପତ ଜୀବନର ଆରମ୍ଭ ହୋଇଛି । ପ୍ରଣୟ ହୋଇଛି କୁସୁମିତ ।

"ଦିନ ଗୃହ ରହି ସେ ବନେ ନରେଶ ପ୍ରମୋଦେ କରି ବିଳାସ,
ନଗରୀକି ଗଲେ ସୁନ୍ଦରୀଙ୍କି ଦେଇ ପରେ ନେଇଯିବା ଆଶ ।"

ପୁଷ୍ପୋଦ୍‌ଗମ ପରେ ଗନ୍ଧ-ପ୍ରସାର ହିଁ ତ ରାଜ୍ୟର ଏକ ସାଧାରଣ ଅଭିଜ୍ଞତା । ଚତୁର୍ଥ ସର୍ଗରେ ସେହି ଧର୍ମର ରକ୍ଷା ହେଲା ଶକୁନ୍ତଳା-ଦୁଷ୍ମନ୍ତ ପ୍ରଣୟ-ଲୀଳାର ଗୋପନୀୟତା ଭଙ୍ଗରେ । ପତିଙ୍କ ପ୍ରବାସ ଯୋଗୁଁ ଶକୁନ୍ତଳାର ଆଶ୍ରମ-ଜୀବନ ବିରହ ଦୁଃଖରେ ଜର୍ଜରିତ ହୋଇଥିଲା । ତନ୍ଦ୍ରିରେ ପତିଗତପ୍ରାଣା ଶକୁନ୍ତଳା ଆତ୍ମବିସ୍ମୃତ ହୋଇ ତପୋବନର ଦ୍ୱାରଦେଶରେ ଉପବିଷ୍ଟ ଥିବା ସତ୍ତ୍ୱେ ଅତିଥିଚର୍ଯ୍ୟା ରୂପ ଶୃଙ୍ଖଳା ପାଳନରେ ଅବହେଳା କରିବା ଦୋଷରେ ମହର୍ଷି ଦୁର୍ବାସାଙ୍କ ଅଭିଶାପର ଶରବ୍ୟ ହେଲା—

"ଯେନ ପୂଜ୍ୟ-ପୂଜା— ବ୍ୟତିକ୍ରମ ଫଳ
ଯାଠାରେ ରଖିଛୁ ଲକ୍ଷ୍ୟ
ସେ ତୋତେ ଚିହ୍ନିବ ନାହିଁ, ତୁ ଦେଲେ ହେଁ
ଆପଣାର ପରିଚୟ ।"

ତଥାପି ଏ ପତିଚିନ୍ତାଗ୍ରସ୍ତା ନବୀନା ବଧୂର ଚୈତନ୍ୟୋଦୟ ହେଲା ନାହିଁ । ସୌଭାଗ୍ୟକ୍ରମେ ସଖୀଦ୍ୱୟ ମହର୍ଷିଙ୍କ କ୍ରୋଧର ଗର୍ଜନରେ ଆକୃଷ୍ଟ ହୋଇ ତାଙ୍କର କ୍ରୋଧ ଶାନ୍ତ କରିବା ଫଳରେ ସେ ଶାପ ମୋଚନର ଉପାୟ ନିର୍ଦ୍ଦିଷ୍ଟ କରିଦେଲେ କୌଣସି ଏକ ସନ୍ତକ ପ୍ରଦର୍ଶନ । ସଖୀ ଆଶ୍ୱସ୍ତ ହେଲେ ଯେ ଶକୁନ୍ତଳା ପାଖରେ ଅଛି ଦୁଷ୍ମନ୍ତଙ୍କ ନାମାଙ୍କିତ ଅଙ୍ଗୁରୀୟ । ତାହାପରେ କୁଳପତି କଣ୍ୱ ଆଶ୍ରମ ପ୍ରତ୍ୟାବର୍ତ୍ତନ ପରେ ଧ୍ୟାନ ଯୋଗେ ଦୁଷ୍ମନ୍ତ ସହ ଶକୁନ୍ତଳାର ପ୍ରଣୟ ବୃତ୍ତାନ୍ତ ପରିଜ୍ଞାତ ହୋଇ ସର୍ବସମକ୍ଷରେ ଏହାର ପ୍ରକାଶ କରିବା ସଙ୍ଗେ ସଙ୍ଗେ ଶକୁନ୍ତଳାର ପତିଗୃହ ଯାତ୍ରାର ଆୟୋଜନ କଲେ । ବୃଦ୍ଧା ମାତୃସମା ତପସ୍ୱିନୀ ଗୌତମୀ ଏବଂ ଶିଷ୍ୟଭ୍ରାତା ଶାର୍ଙ୍ଗରବ, ଶାରଦ୍ୱତଙ୍କ ଗହଣରେ ଆଜନ୍ମ-ଆଶ୍ରମବାସିନୀ ଶକୁନ୍ତଳା ବନସ୍ପତି-ଦତ୍ତ ବସନଭୂଷଣ-ମଣ୍ଡିତା ହୋଇ

ଯିବ ହସ୍ତିନାକୁ ରାଜରାଣୀ ହେବା ଲାଗି । ଏ ଆନନ୍ଦର ଯେପରି ତୁଳନା ନାହିଁ, ଏ ବିଦାୟ ଦୁଃଖର ମଧ୍ୟ ସେହିପରି ପଟାନ୍ତର ନାହିଁ । ଚିର ବ୍ରହ୍ମଚାରୀ ତପସ୍ୱୀ କଣ୍ୱଙ୍କ ଚକ୍ଷୁରେ ଅଶ୍ରୁ ଜଗାଇ ତପୋବନର ବୃକ୍ଷଲତା, ପଶୁପକ୍ଷୀ ଜନମାନବ ସମସ୍ତଙ୍କୁ କନ୍ଦାଇ ଏବଂ ନିଜେ କାନ୍ଦି କାନ୍ଦି ଶକୁନ୍ତଳା ବିଦାୟ ନେଲା ଆଶ୍ରମ ପରିସରରୁ । ପ୍ରିୟଂବଦା ଶେଷ ସମ୍ବାଦରେ କେବଳ କହିଲା, "ସଜନି, ପାଶୋଶରୁ ଅଙ୍ଗୁରୀୟ, ହଯତନେ ସଙ୍ଗେ ନିଅ ।" ଏବଂ କାନିରେ ବାନ୍ଧିଦେଲା । ଏ ପ୍ରସଙ୍ଗ ସୌରଭରେ ଆମୋଦିତ ଶକୁନ୍ତଳାର ଚକ୍ଷୁ ପଥକଣ୍ଟ ଗଣନା ନ କରି ହସ୍ତିନା ମୁଖରେ ହେଲା ଅଗ୍ରସର ।

ଗୌତମୀ ଓ ଶିଷ୍ୟଦ୍ୱୟଙ୍କ ରକ୍ଷଣରେ ଶକୁନ୍ତଳା ରାଜା ଦୁଷ୍ମନ୍ତଙ୍କ ସହିତ ଦେଖାକଲେ ରାଜପୁରର ଅଗ୍ନିଭବନରେ । ଶିଷ୍ୟଙ୍କ ପାଖରୁ କଣ୍ୱ ମୁନିଙ୍କ ପତ୍ର ଦେଖିବା ପରେ ରାଜା ଘୋର ବିସ୍ମୟର ଶରବ୍ୟ ହେଲେ । ଏ ଗର୍ଭବତୀ ନାରୀ ତାଙ୍କର ପରିଣୀତା ପତ୍ନୀ, ଏହା ରାଜାଙ୍କ ସ୍ମରଣକୁ ଆସିଲା ନାହିଁ । ସନ୍ଦେହ ହେଲା, ତାଙ୍କ ଚରିତ୍ର-ଗୌରବରେ କଳଙ୍କ ଲେପନ ପାଇଁ ଏହା ନିଶ୍ଚୟ ଏକ କୂଟଯନ୍ତ୍ର । ତାଙ୍କ ଉତ୍ତରରେ ସେ ସ୍ପଷ୍ଟ ରୂପେ କହିଲେ ଯେ ଏ ନାରୀ ତାଙ୍କର ଅପରିଚିତା । ଶିଷ୍ୟମାନଙ୍କ ତାଡ଼ନାରେ ଶକୁନ୍ତଳାର ମନେ ପଡ଼ିଲା ସେହି ନାମାଙ୍କିତ ମୁଦ୍ରିକା । ସଖୀ ବାନ୍ଧି ଦେଇଥିଲା ଲୁଗା କାନିରେ, ଶକୁନ୍ତଳା ଖୋଜି ଦେଖିଲା "ଟଣ୍ଡି ନାହିଁ; ମୁଦି ନାହିଁ । ହେ ଭଗବନ୍ ! ସଖୀର ସତର୍କବାଣୀ ସତ୍ତ୍ୱେ ସେ ତାହା ହଜାଇ ଦେଇଛି । ଏ ଅବସ୍ଥାରେ ଶକୁନ୍ତଳାର ସଂଜ୍ଞା ଲୋପ ହେଲା । ତଳି ପଡ଼ୁଥିଲା, ଗୌତମୀ ଧରି ବସିଗଲେ ଭୂମି ତଳେ । ତା'ପରେ ତାପସ ବାଳକଙ୍କର ରାଜାଙ୍କ ସହିତ କେତେକ କଠୋର ବାକ୍ୟ ବିନିମୟ ପରେ ଶାର୍ଙ୍ଗରବର ଆଦେଶରେ ଏକାକିନୀ ଅସହାୟା ଶକୁନ୍ତଳାକୁ ତ୍ୟାଗ କରି ସେମାନେ ବାହାରିଲେ । ଗୌତମୀ ମଧ୍ୟ କାତର ପ୍ରାଣରେ ସନ୍ତାନକଳ୍ପା ଶକୁନ୍ତଳାର ସଂଜ୍ଞାହୀନ ଶରୀରକୁ କାନ୍ଥ ଉପରେ ଆଉଜାଇ ଦେଇ ବାହାରିଲେ— ଗୁରୁଙ୍କ ଆଦେଶ ପାଳିତ ହେବା ପରେ ଏ ଧର୍ମହୀନ ରାଜପୁର ତ୍ୟାଗ ହିଁ କର୍ତ୍ତବ୍ୟ । "ଶକୁନ୍ତଳା, କର୍ମଫଳ କର ଭୋଗ ।" ଠିକ୍ ଏହି ସମୟରେ ଶକୁନ୍ତଳାର ସାମାନ୍ୟ ଚୈତନ୍ୟ ଫେରିବା ଅବସ୍ଥାରେ ସେ ଶୁଣିଲା ରାଜା କହୁଛନ୍ତି—"ପୁରୁବଂଶ ହେବ ବିସ୍ତୃତ-ବିଶ୍ରୁତ-ଖ୍ୟାରତ ଜାର-ସନ୍ତାନେ ।" ଏହି "ଜାର" ଶବ୍ଦକୁ "ଯାର" ଭାବରେ ବୁଝିନେଲା ଶକୁନ୍ତଳା । ମନେ

ହେଲା, ପରିହାସ-ପ୍ରିୟ ରାଜା ପ୍ରଥମେ ବୋଧହୁଏ ଛଳନାକ୍ରମେ ଅସ୍ୱୀକାର କରୁଥିଲେ । ପରେ ଶ୍ରବଣ କରିବାକୁ ସ୍ୱୀକୃତ ହେବାରୁ ହୁଏତ ଆଶ୍ରମ ଲୋକେ କର୍ତ୍ତବ୍ୟ ସ୍ଥିର କରିପାରିଲେ । ରାଜାଙ୍କ ବିଷମ ଦ୍ୱନ୍ଦ୍ୱର ସମାଧାନ କରି ପୁରୋହିତ ପ୍ରସ୍ତାବ କଲେ ଯେ ସନ୍ତାନ ପ୍ରସବ ପର୍ଯ୍ୟନ୍ତ ଶକୁନ୍ତଳା ତାଙ୍କ ଦାୟିତ୍ୱରେ ରହୁ । ଭୂମିଷ୍ଠ ପୁତ୍ରର ଚକ୍ରବର୍ତ୍ତୀ ଲକ୍ଷଣ ଏହାର ସମାଧାନ କରିବ । ସେହି ଯୋଜନାରେ, ପୁରୋହିତଙ୍କ ପଶ୍ଚାଦ୍‌ଗାମିନୀ ଶକୁନ୍ତଳାକୁ ହଠାତ୍ ଏକ ଅପୂର୍ବ ସୁନ୍ଦରୀ ନାରୀ କ୍ରନ୍ଦନରତ ଢଙ୍ଗରେ ଧରି ଅନ୍ତର୍ହିତ ହେଲା । ଏହିପରି ଏକ ସୁରଭିତ ପ୍ରଣୟ-ପ୍ରସୂନ ମଧ୍ୟରେ ପ୍ରବେଶ କଲା କୀଟ । ତେଣୁ କବିଙ୍କ ନାମକରଣରେ ପଞ୍ଚମ ସର୍ଗର ଶୀର୍ଷକ ହୋଇଛି "ପୁଷ୍ପେକୀଟ" ।

ପ୍ରସୂନରେ ଭ୍ରମରାଦି କୀଟର ପ୍ରବେଶ ପରେ ଫଳୋଦ୍‌ଗମ ହୋଇଥାଏ । "ପୁଷ୍ପେକୀଟ" ପରବର୍ତ୍ତୀ ଷଷ୍ଠ ସର୍ଗର ନାମକରଣ କରାହୋଇଛି "ପ୍ରଣୟ-ଫଳ" ।

ଶିଶିର ରାଜାର ଶିଶୁ-ଜନ୍ମ ଉତ୍ସବ ପାଳନ ପାଇଁ ଭୁବନ-କାନନରେ ଲାଗିଗଲା ମହାମହୋତ୍ସବ । ଚମ୍ପକ-କୁରୁବକ-କର୍ଣ୍ଣିକାର-ବକୁଳର ପୁଷ୍ପ-ସମାବେଶ ମଧ୍ୟରେ ମଧୁପ ବଜାଇଲା ଶଙ୍ଖ, କୋକିଳ ଗାଇଲା ଗୀତ—ସନ୍ତାନର ନାମକରଣ ହେଲା 'ବସନ୍ତ' । କ୍ରମେ ବୃଦ୍ଧରାଜା ଶିଶିରର ଦେହାବସାନରେ ରାଜା ହେଲା ବସନ୍ତ । ରାଜୋଦ୍ୟାନ ଭ୍ରମଣ କାଳରେ ରାଜା ଦେଖିଲେ ଏକ ବିଚିତ୍ର ତରୁଣୀର ବିଚିତ୍ର ପୁତ୍ର-ସନ୍ତାନ । ଆପଣା ଅଜ୍ଞାତରେ ଏକ ବିଲକ୍ଷଣ ଅଜ୍ଞାବବୋଧ ଜୀବନକୁ ଅଶାନ୍ତ କରି ତୋଳୁଥିଲା । ସ୍ମରଣକୁ ଆସିଯିବା ଅବସ୍ଥାରେ ମଧ୍ୟ ଦୁର୍ବାସା ଅଭିଶାପର ପର୍ଦ୍ଦା ତଳେ ଲୁଚି ଯାଉଥିଲା ଏକ ଅବୋଧ୍ୟ ଅବଚେତନର ଅନୁଭବ । ବ୍ୟାକୁଳରେ ରାଜା କ'ଣ ଖୋଜୁଛନ୍ତ' ପାଉ ନାହାନ୍ତି । ଏହି ସମୟରେ ନଗର ରକ୍ଷକ ଆସି ରାଜାଙ୍କ ହସ୍ତରେ ମୁଦ୍ରିକାଟିଏ ଦେଲେ ଏବଂ ଜଣାଇଲେ ଯେ ସେହି ନାମାଙ୍କିତ ଅଙ୍ଗୁରୀୟର ଚୋର ଏକ ଧୀବର ଧରା ହୋଇ ଆସିଛି । ଶଚୀ-ତୀର୍ଥରେ ଧରା ହୋଇଥିବା ମାଛର ପେଟରୁ ମିଳିଥିଲା ଏହି ହେମମୁଦ୍ରିକା । ଦୁର୍ବାସାଙ୍କ ଅଭିଶାପ ଖଣ୍ଡନର ଅବଲମ୍ବନ ଏ ମୁଦ୍ରିକା ଯାହାର ଅଭାବରେ ପରିଣୀତା ପତ୍ନୀ ଶକୁନ୍ତଳା ହୋଇଛି ପ୍ରତ୍ୟାଖ୍ୟାତା, ତା ସହିତ ଯାଇଛି ତାଙ୍କ ଔରସ ପୁତ୍ର । ଆଜି କାଲୁ ପ୍ରତିପନ୍ନ ହୋଇଛି ଯେ ସବୁ ସତ୍ୟ—କଣ୍ୱଙ୍କ ପତ୍ର ଓ ବନବିହାର କାହାଣୀ । ଏ ଦୁଃଖର ପଟାନ୍ତର ନାହିଁ । ଜୀବନଭରା ଅନୁଶୋଚନାର ବୋଝ

ତଳେ ବସିବେ ହସ୍ତିନାରାଜ ଦୁଷ୍ମନ୍ତ । କେଉଁ ଦୁର୍ଦ୍ଦୈବ ଟାଣିକି ଘଟାଇଲା ଏହି ମହାଭ୍ରମ ? ଆହା ନିରପରାଧା ଶକୁନ୍ତଳା ! କେଉଁ ଦୋଷରେ ତା'ର ହେଲା ଏତେ ବଡ଼ ଦଣ୍ଡ ? ଏକ ସମାଧାନ ଶୂନ୍ୟ ପ୍ରହେଳିକାରେ କାତର ହୋଇ ଆତ୍ମନିନ୍ଦା-ପରାୟଣ ରାଜା ଭୋଗୁଥିଲେ ବିରହର ଏହି ବେଦନା ଯନ୍ତ୍ରଣା । "ପ୍ରଣୟ ପ୍ରସୂନ"ର ମଧୁର ଫଳ ଚାଖିବାକୁ ମିଳିଥିଲା । ଏବେ ମିଳିଲା "ଯେମନ୍ତ ମଧୁର ତିକ୍ତ ହିଁ ତେମନ୍ତ ପ୍ରକୃତ ପ୍ରଣୟ ଫଳ ।"

ମହାଦୁଃଖୀ ଦୁଷ୍ମନ୍ତରାଜାଙ୍କ ନିକଟରେ ଇନ୍ଦ୍ର ସାରଥି ମାତଳି ଆସି ଜଣାଇଲେ ଦେବରାଜ ଇନ୍ଦ୍ରଙ୍କ ନିମନ୍ତ୍ରଣ । ନୀଳାଚଳ ଧାମରେ ଦୟା, କ୍ଷମା, ଶାନ୍ତି, ଧୃତି ପ୍ରମୁଖ ଦେବକନ୍ୟାଙ୍କ ସହିତ ହିଂସା ଈର୍ଷ୍ୟାଦି ରାକ୍ଷସ କନ୍ୟାମାନେ କଳହ ଲଗାଇ ଶେଷରେ ସମୁଦାୟ ରାକ୍ଷସ ସେନାଙ୍କୁ ସ୍ୱର୍ଗ ବିରୋଧରେ ଉତ୍ତେଜିତ କଲେ । ଇନ୍ଦ୍ରାଦି ଦେବତାମାନେ ବହୁ ଦୁଃଖ ଭୋଗିବା ପରେ ଗୁରୁ ବୃହସ୍ପତିଙ୍କୁ ଏହାର କାରଣ ଓ ସମାଧାନ ବ୍ୟବସ୍ଥା ଲାଗି ଅନୁରୋଧ କଲେ । ଦେବଗୁରୁ କହିଲେ, "ଦେବତା ମଧ୍ୟ ଅନ୍ୟାୟ ଆଚରଣ କରି ରକ୍ଷା ପାଏ ନାହିଁ । ବିଶ୍ୱାମିତ୍ରଙ୍କ ତପୋଭଙ୍ଗ ଘଟାଇ ଇନ୍ଦ୍ର ସ୍ୱୟଂ ଜଣେ ସାଧୁଙ୍କୁ ପଥଭ୍ରଷ୍ଟ କରିବାର ଫଳ ହେଲା ଶକୁନ୍ତଳା ଜନ୍ମ । ସେହି ନିରୀହା ଶକୁନ୍ତଳା ଯେତେବେଳେ ତା'ର ଜୀବନ ଦେବତା ସ୍ୱାମୀଙ୍କ ଚିନ୍ତାରେ ବିଭୋର ଥିଲା ସେତେବେଳେ ଜଣେ ମହର୍ଷି ଦୁର୍ବାସା କ୍ରୋଧରେ ଅଭିଶାପ ଦେଲେ ପ୍ରତ୍ୟାଖ୍ୟାତ ହେବୁ । ପ୍ରତ୍ୟାଖ୍ୟାନର ଶେଷ ଫଳ ହେଲା ନିର୍ଦ୍ଦୋଷ କର୍ତ୍ତବ୍ୟନିଷ୍ଠ ରାଜା ଦୁଷ୍ମନ୍ତଙ୍କର ଘୋର ଅନୁତାପ ଓ ଯାତନା ଯନ୍ତ୍ରଣା । ଏ ସବୁ ଦୁଷ୍କର୍ମର ଫଳ ହେଉଛି ରାକ୍ଷସମାନଙ୍କ ହସ୍ତରେ ଦେବତାଙ୍କର ପରାଭବ । ଅନୁତାପ ଦଗ୍ଧ ଦୁଷ୍ମନ୍ତଙ୍କର କ୍ଷାତ୍ରତେଜ ହିଁ ଅସୁର ବିନାଶ କରିପାରିବ । ତାଙ୍କୁ ଆମନ୍ତ୍ରଣ କର ।" ମାତଳିଙ୍କ ସହିତ ଦୁଷ୍ମନ୍ତ ସ୍ୱଦେହରେ ସ୍ୱର୍ଗଯାତ୍ରା କଲେ ଏବଂ ରାକ୍ଷସ ଦମନ ପରେ ପ୍ରତ୍ୟାବର୍ତ୍ତନ କାଳରେ ମାରୀଚ ଆଶ୍ରମ ଦର୍ଶନର ଇଚ୍ଛା ପ୍ରକାଶ କରି ସେଠାରେ ଅବତରଣ କଲେ ।

ଉପବନରେ କ୍ରୀଡ଼ାରତ ଏକ ଅସୀମ ସାହସୀ ଶିଶୁ ଏକ ସିଂହଶାବକର ପାଟି ଖୋଲି ତାର ଦାନ୍ତ ଦେଖୁଥିଲା । ପାଖରେ ଥିଲେ ତାର ଧାତ୍ରୀ ତାପସୀ । ରାଜା ପଚାରି ବୁଝିଲେ ଏ ଜଣେ ପିତୃ ପରିତ୍ୟକ୍ତ ରାଜପୁତ୍ର । ଦୁର୍ଦ୍ଦାନ୍ତ ଶିଶୁର ଅତ୍ୟାଚାରରୁ ସିଂହଛୁଆଟିକୁ ରକ୍ଷା କରିବା ଲାଗି ଗୋଟାଏ ଖେଳନା ପକ୍ଷୀ ଦେଖାଇ

ଧାତ୍ରୀ ଡାକଦେଲା, "ଏ ପିଲା, ଶକୁନ୍ତ-ଲାବଣ୍ୟ ଦେଖ ।" 'ଶକୁନ୍ତଳା' ଉଚ୍ଚାରଣରେ ଶିଶୁଟି ଇତସ୍ତତଃ ଚାହିଁ 'ମା, ମା' ବୋଲି କହିବାରୁ ରାଜାଙ୍କର ସନ୍ଦେହ ଘନୀଭୂତ ହେଲା । ସେହି ମା'ଙ୍କୁ ଦେଖିବା ଆଶାରେ ଧାଇଁବା ବେଳେ ପିଲାଟିର କଟିଦେଶରୁ ପଡ଼ିଗଲା ଏକ ରକ୍ଷା କବଚ । ରାଜା ତାହାକୁ ହାତରେ ଉଠାଇ ନେଇ ନେଇ ତପସ୍ୱୀ ତାଙ୍କୁ ହାଁ, ହାଁ କରି ବାରଣ କରି ଧାଇଁଛନ୍ତି । ଏ ପ୍ରହେଳିକା ବୁଝି ନପାରି ରାଜା ପଗ୍ଭରି ଜାଣିଲେ ଯେ ଋଷିଦତ୍ତ ଏ କବଚର ବିଶେଷ ଗୁଣ ଥିଲା । ପିଲାଟିର ଦେହରୁ ପୃଥକ୍ ଥିବା ଅବସ୍ଥାରେ ଶିଶୁର ପିତାଙ୍କ ଛଡ଼ା ଅପର କେହି ଛୁଇଁଲେ ସେ ସର୍ପାଘାତରେ ନିହତ ହେବ ଏପରି ଦୁର୍ଘଟଣା ଆଗରୁ ଘଟିଛୁ । ଏହାଶୁଣି ରାଜା ଅଶେଷ ଆନନ୍ଦରେ ପିଲାଟିକୁ କୁଣ୍ଢାଇ ପକାଇ "ମୋର ପୁଅ" କହି କହି ପିଲାଟିକୁ ଅଜସ୍ର ଚୁମ୍ବନରେ ଅଚ୍ଛାଦିତ କରିଦେଲେ । ଆନନ୍ଦାତିଶଯ୍ୟରେ ତାପସୀ ଗ୍ଭଲିଗଲା ଅଦୃଷ୍ଟହତା ଶକୁନ୍ତଳାକୁ ସମ୍ବାଦ ଦେବାକୁ । ଏଣେ ଶିଶୁଟି ଅବିଶ୍ୱାସଭରା ଦୃଷ୍ଟିରେ ଏ ଅପରିଚିତ ବ୍ୟକ୍ତିଙ୍କ କୋଳରୁ ଓହ୍ଲାଇ ପଡ଼ିଲା । ରାଜା ତାର ହାତ ଛାଡ଼ିଲେ ନାହିଁ । ସେ ଟାଣି ଟାଣି ଗ୍ଭଲିଲା ମା, ମା ଡାକି ଡାକି । ଶକୁନ୍ତଳା ବି ଦେଖିଛୁ ରାଜାଙ୍କର ବିରହଦଗ୍ଧ ବିବର୍ଣ୍ଣ ବପୁ । ନିଜ ମାତା ମେନକାର ଅବିଗ୍ଭରିତା ଯୋଗୁଁ ରାଜାଙ୍କର ଏ ଦଶା ଘଟିଛୁ ଭାବି ଦୁଃଖ ଓ ଲଜ୍ଜାରେ ଭାଙ୍ଗି ପଡ଼ୁଛୁ । ରାଜା ତାର ଶୀର୍ଣ୍ଣ ଶରୀର ଦେଖି ଅନୁତପ୍ତ ହୋଇ ଅଶ୍ରୁନନ୍ଦା କରୁଥିବା ଅବସ୍ଥାରେ ଶିଶୁଟି ଅପର ହସ୍ତରେ ମାତାର ହସ୍ତଧାରଣ କରି କହିଲା, "ଦେଖ ମା, ଏ କହୁଛନ୍ତି ସେ ପରା ମୋର ବାପା ।" କବିଙ୍କ କଥାରେ—

"କେହି କାହା କଥା କହିବାକୁ ଆଉ
ହେଲା ନାହିଁ ଅବସର
ଭଗୀରଥ ହୋଇ ମିଳାଇଲା ଶିଶୁ
ସୁରଧୁନୀ ରତ୍ନାକର ।"

ତା'ପରେ ସସ୍ତ୍ରୀକ ରାଜା ମହର୍ଷି ମାରୀଚଙ୍କୁ ଦର୍ଶନ କରି ତାଙ୍କଠାରୁ ଶୁଣିଲେ ଦୁର୍ବାସାଙ୍କ ଅଭିଶାପ ବୃତ୍ତାନ୍ତ ଏବଂ ତାଙ୍କ କରୁଣାମୟ ଆଶୀର୍ବାଦ ଲାଭ କରି ପ୍ରତ୍ୟାବର୍ତ୍ତନ କଲେ । ମର୍ତ୍ତ୍ୟରୁ ସ୍ୱର୍ଗ ପର୍ଯ୍ୟନ୍ତ ପ୍ରସାରିତ ହୋଇ ଯାଇଥିବା ପ୍ରଣୟ-ଲତାର ସୁଗନ୍ଧ ଶୀତଳ "ପ୍ରଣୟ-ଛାୟା" ଜୀବନକୁ କଲା କାନ୍ତିମୟ, ଶାନ୍ତିମୟ ।

## 'ପ୍ରଣୟ ବଲ୍ଲରୀ' ନାମକରଣର ବୈଶିଷ୍ଟ୍ୟ :

ଆଶ୍ରମ-ପାଳିତା ସରଳା ଯୁବତୀ ଶକୁନ୍ତଳାର ହୃଦୟ ଥିଲା ଏକ ଉର୍ବର କ୍ଷେତ୍ରଭୂମି । ଦୁଷ୍ମନ୍ତ ତହିଁରେ ଯେଉଁ ପ୍ରଣୟବୀଜ ବପନ କଲେ ତାହା ଅଙ୍କୁରିତ ହୋଇ ସମୟକାଳ ମଧ୍ୟରେ ପତ୍ର, ପୁଷ୍ପ, ଫଳ ଓ ଛାୟା ପର୍ଯ୍ୟନ୍ତ ବିସ୍ତୃତ ହୋଇଛି । ପ୍ରେମର ଆରମ୍ଭ ଏବଂ ଉତ୍ଥାପନ-ପତନମୟ ବିକାଶ ମଧ୍ୟରେ ତାହାର ଅନ୍ତିମ ପରିଣତିକୁ ମେହେର ଅତି ନିପୁଣଭାବେ ଏକ ଲତା ଜୀବନର ରୂପକ ମଧ୍ୟରେ ରୋପଣ କରିଛନ୍ତି । ଆମର ସଂସ୍କୃତ ଓ ଓଡ଼ିଆ କାବ୍ୟମାନଙ୍କରେ ପ୍ରୀତିର ଏ ରୂପକ କଳ୍ପନା ଥିଲା; କିନ୍ତୁ ତାହା ସୀମିତ ଥିଲା ଅଙ୍କୁର ପଲ୍ଲବ, ପୁଷ୍ପ ଓ ସମ୍ଭୋଗାତ୍ମକ ଫଳ ମଧ୍ୟରେ । ମେହେର କବି 'ପୁଷ୍ପେ କୀଟ' ପ୍ରଭୃତି ଝଞ୍ଜି ଉଦ୍ଭିଦ ବିଜ୍ଞାନ ବିଷୟରେ ତାଙ୍କ ଜ୍ଞାନର ଉପଯୋଗ କରିଛନ୍ତି । କିନ୍ତୁ 'ପ୍ରଣୟ ଫଳ'ରେ ବିରହର ତିକ୍ତ ଫଳ ଦେଇଛନ୍ତି ରାଜାଙ୍କୁ । ଏହା ତାଙ୍କର ଏକ ଯୁକ୍ତିଯୁକ୍ତ ସିଦ୍ଧାନ୍ତ । ଶକୁନ୍ତଳା ସହିତ ତାଙ୍କ ପରିଣୟକୁ ଅସ୍ୱୀକାର କରି ରାଜା ସଚେତନ ଭାବେ ପରିବର୍ଜନ କରିବାର ପରିଣାମ ହେଲା ତାଙ୍କ ପାଇଁ ଘୋର ଅନୁତାପର ଦୁଃଖ । ବିଚାର କରି ଦେଖିଲେ ରାଜା ହେଉଛନ୍ତି ବୀଜବପନ କର୍ତ୍ତା କୃଷକ; ତେଣୁ ଫଳ ଯଦି ହୁଏ ଦୁଃଖ ତାକୁ ଭୋଗିବ କିଏ—କ୍ଷେତ୍ର ନା ସ୍ୱାମୀ ? ମେହେର କବି ଖୁବ୍ ଯୁକ୍ତିସିଦ୍ଧ ଭାବେ ଏହା କରିଛନ୍ତି । ପକ୍ଷାନ୍ତରେ ସରଳ ହୃଦୟା ପ୍ରଣୟିନୀ ଶକୁନ୍ତଳା ରାଜାଙ୍କ ପ୍ରେମରେ ଆସ୍ଥାବତୀ ହୋଇଥିବାରୁ ଏଭଳି ଆତ୍ମଦ୍ରୋହର ଶରବ୍ୟ ହୋଇନାହିଁ । ମାରୀଚ ଆଶ୍ରମରେ ମାତାର ବାହୁଚ୍ଛାୟା ତଳେ ଦୀର୍ଘପ୍ରବାସରେ ତାର ବିରହ ଦୁଃଖ ଥିଲା ଅବଶ୍ୟ; କିନ୍ତୁ ସେଥିପାଇଁ ସେ ଦାୟୀ କରୁଥିଲା ତା'ର ମାତା ମେନକାକୁ । କବିଙ୍କ ଭାଷାରେ—

"ତ୍ରୁଟି ଥିଲା ବାମା ମାତା ଲାଗି ତାର
ଘଟିଛି ପତି ବିରହ ।"

ମେହେରଙ୍କ ଚେତନାର ଏହା ଏକ ସୁସ୍ପଷ୍ଟ ସିଦ୍ଧାନ୍ତ । ଶକୁନ୍ତଳା ନାଟକର ଘଟଣାଧାରାରେ ଏପରି ପରିବର୍ତ୍ତନ କରି ସେ ଯେଉଁ ନୂଆ ଶକୁନ୍ତଳା ଗଢ଼ିଲେ ସେ ବିଷୟରେ ବ୍ରଜମୋହନ ପଣ୍ଡାଙ୍କୁ ଏକ ପତ୍ରରେ ଲେଖିଥିଲେ ଯେ ପ୍ରଣୟ ବ୍ୟାପାରରେ ନାରୀର ହୃଦୟରେ ଥରେ ଅବିଶ୍ୱାସ ପ୍ରବେଶ କଲେ ସେ ଭଙ୍ଗା ମନ ଆଉ ଯୋଡ଼ି ହୁଏ ନାହିଁ । ତେଣୁ କବି ଶକୁନ୍ତଳା ଚରିତ୍ରରେ ନିଜ ମନୋମତ ପରିବର୍ତ୍ତନ କଲେ । ମାଆଘରକୁ ବିବାହିତା ହୋଇ ପ୍ରସବ ପାଇଁ

ଆସି ହିକଏ ବେଶୀ ଦାନ ରହିଯାଏ ତ ବେହେଲ ହେଲେ । ଏଥିରେ ସ୍ୱାମୀର ବା ଦୋଷ କଣ ?

ଶେଷ କଥା ପ୍ରଣୟ-ଛାୟା । ଲତାର ପାଚିଲ ଫଳ ମିଠାଲାଗେ, ବେଳେ ବେଳେ ପିତା ଫଳ ବି ଫଳେ । କିନ୍ତୁ ଶିରୋପବି ବସ୍ତୃତ ଭାବେ ମାଡ଼ିଯାଇଥିବା ଲତା ମଣ୍ଡପ ତଳେ କେବଳ ମିଳେ ଶାନ୍ତି—ସେଠି ନାହିଁ ଖଟା ବା ପିତା ଖାଲି ମିଠା । ମିଳନର ଉତ୍ତେଜନା ପରେ ଅଭିଶାପ, ପ୍ରତ୍ୟାଖ୍ୟାନ, ଅନୁତାପ ଓ ବିରହ-ଜ୍ୱାଳାରେ ନିର୍ମଳ ମଜା ହୁନା ପର ପରସ୍ପର-ନିଷ୍ଠ ପ୍ରଣୟୀ ପ୍ରଣୟିନୀ ପାଆନ୍ତି ଯେଉଁ ଆଶ୍ୱସ୍ତି ଓ ଆନନ୍ଦ ତାହାର ସୂଚନା ପାଇଁ ଲତା-ଜୀବନର ଛାୟା ହିଁ ପ୍ରକୃତ ଯୋଗ୍ୟ ଅବସ୍ଥା । ମର୍ତ୍ତ୍ୟର ଉତ୍ତେଜନାମୟ ସ୍ତରରୁ ଛଠି ଆକାଶର ସ୍ତିମିତ ସୋପାନକୁ ଉନ୍ନୀତ ହେବା ପରେ 'ଶକୁନ୍ତଳା'ରେ ପ୍ରେମର ସାତ୍ତ୍ୱିକ ଓ ସ୍ୱର୍ଗୀୟ ବିକାଶ ବିଷୟରେ ମହାକବି ଗେଟେ ଯେଉଁ ସମାଲୋଚନା ମୂଳକ ସୂକ୍ଷ୍ମ ମନ୍ତବ୍ୟ ଦେଇଥିଲେ ତାହାର ଅବବୋଧର ପ୍ରାଞ୍ଜଳ ପ୍ରକାଶ ଘଟିଛି ପ୍ରଣୟ-ଛାୟା ନାମକରଣରେ ।

ଶେଷରେ ବକ୍ତବ୍ୟ ଯେ କବିଗୁରୁ କାଳିଦାସଙ୍କ ନାଟକ 'ଶକୁନ୍ତଳା' ଏବଂ ମେହେରଙ୍କ କାବ୍ୟ 'ପ୍ରଣୟ-ବଲ୍ଲରୀ'କୁ ମିଳାଇ ଦେଖିଲେ, ଜଣାପଡ଼େ ପ୍ରାୟ ଅର୍ଦ୍ଧେକ ଅଂଶ ମାତ୍ର ଅନୂଦିତ ହୋଇଛି । ଅପରାର୍ଦ୍ଧ ଯେ ଗଙ୍ଗାଧର ଅନୁବାଦ କରିନାହାନ୍ତି ଏହା ତାଙ୍କ ଅଜ୍ଞତାରୁ ଘଟିନାହିଁ । ତାଙ୍କ କାବ୍ୟର ଲକ୍ଷ୍ୟ ତଥା ତାଙ୍କର ସ୍ୱକୀୟ ଦୃଷ୍ଟିଭଙ୍ଗୀ ଅବ୍ୟାହତ ରଖିବା ଉଦ୍ଦେଶ୍ୟରେ ସେ କେତେକ ଅଂଶର ଅନୁବାଦ ପରିହାର କରିବା ସଙ୍ଗେ ସଙ୍ଗେ କେତେକ ସମ୍ପୂର୍ଣ୍ଣ ନୂତନ ପ୍ରସଙ୍ଗରେ ସଂଯୋଜନ କରିଛନ୍ତି । ଫଳରେ 'ପ୍ରଣୟ ବଲ୍ଲରୀ'କୁ ଏକ ଅଭିନବ କାବ୍ୟ କହିବା ହିଁ ଯଥାର୍ଥ ଏବଂ ଏଥିରେ ମେହେରଙ୍କ ସଫଳତା ସର୍ବସମ୍ମତ ହୋଇଛି ।

## 'ପଦ୍ମିନୀ : ଐତିହାସିକ କାବ୍ୟ

ଗଙ୍ଗାଧର ମେହେରଙ୍କ ଅଭିଳାଷ ଥିଲା ଏକ ଐତିହାସିକ କାବ୍ୟ ରଚନା କରିବାର । ସେଥିଲାଗି ବିଷୟ-ଚୟନ ଉଦ୍ଦେଶ୍ୟରେ ସେ ରାଜସ୍ଥାନର ଇତିହାସ ଅଧ୍ୟୟନ କରିଥିଲେ ଏବଂ ଚିତୋର ରାଣା ଭୀମସିଂହଙ୍କ ପତ୍ନୀ ଅନନ୍ୟ ସୁନ୍ଦରୀ

ରାଜପୁତ ଲଳନା ପଦ୍ମିନୀଙ୍କୁ ଲାଭ କରିବା ଲାଗି ସମକାଳୀନ ମୁସଲମାନ ବାଦଶାହା ଆଲ୍ଲାଉଦ୍ଦିନଙ୍କ ମେବାର ଆକ୍ରମଣ, ଛଳ, ବିଶ୍ୱାସଘାତକତା, ମେବାର ଧ୍ୱଂସ ଓ ପଦ୍ମିନୀଙ୍କ ଅଗ୍ନିପ୍ରବେଶ ବୃତ୍ତାନ୍ତକୁ କାବ୍ୟବସ୍ତୁ ରୂପେ ଗ୍ରହଣ କଲେ । ଚତୁର୍ଦ୍ଦଶାକ୍ଷରୀ ବୃତ୍ତରେ ପାଞ୍ଚୋଟି ସର୍ଗରେ ରଚିତ ଏ କାବ୍ୟର ପ୍ରଥମ ଭାଗ ମଧ୍ୟ ଅସମ୍ପୂର୍ଣ୍ଣ ରହିଗଲା । କିନ୍ତୁ ଇତିହାସ ଅନୁରୋଧରେ ଐତିହାସିକ ଘଟଣାର ବିଶୃଙ୍ଖଳ ବିନ୍ୟାସ ପ୍ରତି ଅଧିକ ଯତ୍ନଶୀଳ ହେବାର ଫଳ ହେଲା କାବ୍ୟଶିଳ୍ପ କ୍ଷେତ୍ରରେ ଗୁରୁ ଗୁମ୍ଫନର ଅଭାବ । ଫଳତଃ ମଝେ ମଝେ ବର୍ଣ୍ଣନାର ଚମତ୍କାରିତା ସତ୍ତ୍ୱେ ଏ କାବ୍ୟ ଏକ ପ୍ରକାର ଛନ୍ଦୋମୟ ଇତିହାସରେ ପର୍ଯ୍ୟବସିତ ହୋଇଯାଇଛି କହିଲେ ଅତ୍ୟୁକ୍ତି ହେବନାହିଁ । ତଥାପି ପଦ-ରଚନାର ସ୍ୱାଭାବିକ ମାଧୁରୀ ଯୋଗୁଁ କାବ୍ୟଟି ସୁଖପାଠ୍ୟ ହୋଇଛି । ରାଜପୁତ ଲଳନାର ସ୍ୱାଭିମାନ ଏବଂ ସତୀତ୍ୱ ସହିତ ରାଜରାଣୀର ପ୍ରଜାବତ୍ସଳତାର ଯେଉଁ ମହନୀୟତା ଅଙ୍କିତ ହୋଇଛି ତହିଁରେ କାବ୍ୟିକ ଚରିତ୍ରର ଉଜ୍ଜ୍ୱଳ ଆଦର୍ଶ ଏକାନ୍ତ ଭାବେ ମେଧେହେର ପ୍ରତିଭାର ଅନୁରୂପ ହୋଇଛି ।

## 'ତପସ୍ୱିନୀ' : କାବ୍ୟ ପ୍ରତିଭାର ଚରମ ସିଦ୍ଧି

୧୯୧୪ରେ ପ୍ରକାଶିତ 'ତପସ୍ୱିନୀ' କାବ୍ୟ ମେଧେହେରଙ୍କ ସାହିତ୍ୟ ସୃଷ୍ଟିର ଶିରୋଭୂଷଣ ରୂପେ ଅବିସମ୍ବାଦିତ ସ୍ୱୀକୃତି ପାଇଛି । ଏହାର ସର୍ଗ ସଂଖ୍ୟା ଏଗାର । ରାମକେଶୀ, ବଙ୍ଗଳାଶ୍ରୀ, ଭୈରବି, ରସକୁଲ୍ୟା, କଳହଂସ କେଦାର, ନଟବାଣୀ, କଲ୍ୟାଣ ପଡ଼ିତାଳ ବୃତ୍ତ ସହିତ ଚତୁର୍ଦ୍ଦଶାକ୍ଷରୀ ଗ୍ରନ୍ଥରେ ସର୍ଗଗୁଡ଼ିକ ରଚିତ । କାବ୍ୟର ବିଷୟ ସୂଚନା ଦେବାକୁ ଯାଇ କାବ୍ୟର ପ୍ରଥମ ସର୍ଗରେ କବି ଉଲ୍ଲେଖ କରନ୍ତି—

"ବାଲମୀକି ଆଶ୍ରମକୁ ଧାଇଁଅଛି ମନ,
କରିବାକୁ ନିର୍ବାସିତା ସୀତାଙ୍କୁ ଦର୍ଶନ ।
କେମନ୍ତେ ସେ କଲେ କଷ୍ଟ ହୃଦୟ ସୀବନ,
କେମନ୍ତେ ବା କେଉଁଠାରେ ଯାପିଲେ ଜୀବନ ।"

ଏହି ଉକ୍ତିରୁ ସ୍ପଷ୍ଟ ସୂଚିତ ହୁଏ ଯେ ରାମାୟଣୋକ୍ତ ଉତ୍ତରକାଣ୍ଡ— ସୀତାବନବାସ ଅଂଶର ସୀତାଚରିତ୍ର ହିଁ କାବ୍ୟର ଉପଜୀବ୍ୟ । ଭାଗୀରଥୀ

ତୀରରେ ବାଲ୍ମୀକି ଆଶ୍ରମ ନିକଟରେ ସୀତାଙ୍କୁ ପରିତ୍ୟାଗ କରି ଲକ୍ଷ୍ମଣ ପ୍ରତ୍ୟାବର୍ତ୍ତନ କରିବା ପରେ ସୀତାଙ୍କର ବିଳାପ ଓ ମୂର୍ଚ୍ଛାରୁ ଆରମ୍ଭ ହୋଇଛି । ଗର୍ଭବତୀ ଅବସ୍ଥାରେ ଏକାକିନୀ ପରିତ୍ୟକ୍ତା ସୀତା ଅସହାୟ ଭାବରେ ବିଳାପ କରୁଥିଲେ ମଧ୍ୟ ଏ ନିର୍ବାସନର କାରଣ ଅନୁଧ୍ୟାନ କରି କରି ତାଙ୍କ ଜୀବନର ତିନୋଟି ଦୁଃଖ ସ୍ମରଣ କରୁଥିଲେ—ରାବଣ ଦ୍ୱାରା ସୀତାହରଣ, ଅଗ୍ନିପରୀକ୍ଷା ଓ ଆଜିର ଏ ନିର୍ବାସନ । ଏହି ଆତ୍ମସମୀକ୍ଷା ମଧ୍ୟରେ ତାଙ୍କର ହୃଦ୍‌ବୋଧ ହୋଇଥିଲା ଯେ ପ୍ରତ୍ୟେକଟି ଦୁଃଖର କାରଣ ତାଙ୍କର ନିଜକୃତ ପାପ । ପ୍ରଥମ ପାପ ହେଉଛି—ନିଷ୍ପାପ ଲକ୍ଷ୍ମଣଙ୍କ ଚରିତ୍ରରେ ସନ୍ଦେହ ପ୍ରକାଶ କରି ସୀତା ତାଙ୍କୁ ତିରସ୍କାର କରିଥିଲେ ଯାହା ଯୋଗୁଁ ରାମଙ୍କ ଆଦେଶ ଲଙ୍ଘନ କରି ଲକ୍ଷ୍ମଣ ମାୟାମୃଗ ପଶ୍ଚାଦ୍ଧାବନକାରୀ ରାମଙ୍କ ଅନ୍ୱେଷଣରେ ଗଲେ । ସୀତାଙ୍କର ରକ୍ଷାକବଚ କଟିଗଲା, ରାବଣ ତାଙ୍କୁ ଅପହରଣ କଲା । ଦ୍ୱିତୀୟତଃ ଅଶୋକବନରେ ମାୟାବୀ ରାବଣ କାଟିଦେଲା ମାୟାରାମଙ୍କ ମୁଣ୍ଡ; ସୀତା ଖୁବ୍ କାତର ବିଳାପ କଲେ ସିନା ପ୍ରାଣ ଗଲା ନାହିଁ । ସେ ପାପ ପ୍ରାଣ ତେଣୁ ଅସତୀର କଳଙ୍କରୁ ନିଷ୍କୃତି ନିମିତ୍ତ ଅଗ୍ନିପରୀକ୍ଷାରେ ଅବତୀର୍ଣ୍ଣ ହେଲା । ତୃତୀୟତଃ, ରାମପଦ ସେବାର ଅବସର ପାଇଥିଲେ ହେଁ ସୀତା ବନଦର୍ଶନକୁ ଅଧିକ ସୁଖକର ମନେ କରିବାରୁ ନିର୍ବାସନ ମଧ୍ୟରେ ନିତ୍ୟ ବନଦର୍ଶନର ସୁଯୋଗ ଜୁଟିଲା । ଏ ଆତ୍ମସମୀକ୍ଷା-କାରିଣୀ ମନସ୍ୱୀ ମହିଳା ସୀତାର ଏହି ଚିନ୍ତା ମଧ୍ୟରେ ହିଁ କର୍ମ ଓ ଫଳଶ୍ରୁତିର ଯେଉଁ ନିବିଡ଼ ସମ୍ବନ୍ଧ ରହିଛି ତାହା କବିଙ୍କୁ ଯୋଗାଇଛି ଯୁକ୍ତି । ଏହାହିଁ ସୀତାର ସ୍ୱକୀୟ ନିୟତି । ତେଣୁ ସୀତାର ଏ ଦୁଃଖ ଲାଗି ବିଧାତା ଦୋଷୀ ନୁହନ୍ତି, ଦୋଷୀ ନୁହନ୍ତି କରୁଣାସାଗର ରାମଚନ୍ଦ୍ର । ଦାୟୀ ସୀତାର ପାପବୃତ୍ତି । ସ୍ପଷ୍ଟ ଓ ପ୍ରତ୍ୟକ୍ଷ ଭାବେ ।

ପଶ୍ଚାତ୍‌ରେ ବିଶ୍ୱାସୀ ଦୂତ ମୁଖରୁ ସୀତାଙ୍କର କଳଙ୍କ ପ୍ରଜାଙ୍କ ମଧ୍ୟରେ ଆଲୋଚ୍ୟ ହୋଇଥିବା ବିଷୟ ଶ୍ରବଣ କଲାପରେ କର୍ତ୍ତବ୍ୟ-ପରାୟଣ ରାଜା ପାଇଁ ସୀତା-ତ୍ୟାଗ ଛଡ଼ା ଅନ୍ୟ ବିକଳ୍ପ ପନ୍ଥା କ'ଣ ଥିଲା ?—ଏ ପ୍ରଶ୍ନ ନିଜକୁ ପଚାରି ସୀତା ନିଜ ବିବେକ ଠାରୁ ଉତ୍ତର ପାଇଛନ୍ତି—ରାମ ସମୁଚିତ କର୍ତ୍ତବ୍ୟ ହିଁ ପାଳନ କରିଛନ୍ତି । ସେତେବେଳେ ରାମଙ୍କ ଉପରେ ଦୋଷ ଲଦିଦେଇ ଆତ୍ମପକ୍ଷ ସମର୍ଥନ ପାଇଁ ସୀତାଙ୍କର କିଛି ହେଲେ ବକ୍ତବ୍ୟ ନ ଥିଲା । ଆଦର୍ଶ ବଡ଼ କଠୋର, କର୍ତ୍ତବ୍ୟ ବଡ଼ ନିଷ୍ଠୁର । ମର୍ଯ୍ୟାଦା-ପୁରୁଷୋତ୍ତମ ରାମଙ୍କୁ ଆଦର୍ଶର କଣ୍ଟକ ମୁକୁଟ ପିନ୍ଧାଇ ଭାରତୀୟ ପରମ୍ପରା ଏକ ଅପୂର୍ବ ସୃଷ୍ଟି କରିଛି ନିବୃତ୍ତି ଧର୍ମର ; କିନ୍ତୁ ସୀତାଙ୍କୁ ପ୍ରବୃତ୍ତିର କୋମଳ କୋଳରେ ଏକ କରୁଣ

ପ୍ରତିମା ସଜାଇ ଦେଇ ରକ୍ତମାଂସ ର ହାହାକାର ମଧ୍ୟରେ ଅଶ୍ରୁଳ ଅନୁକମ୍ପାର ସ୍ରୋତସ୍ୱିନୀ ବୁହାଇଛନ୍ତି । ବାଲ୍ମୀକି, କାଳିଦାସ, ଭବଭୂତି ପ୍ରମୁଖ ଶତ ଶତ ସ୍ରଷ୍ଟାଙ୍କର ଏ ମତ ବିରୋଧରେ ମେହେରଙ୍କ ସୀତା କଣ୍ଠରୁ ଶୁଭିଛି—

"ପ୍ରଜାରଂଜନ ବ୍ରତେ ଅଟ ତୁମ୍ଭ ବ୍ରତୀ
ମୁଁ ସହଧର୍ମିଣୀ ତୁମ୍ଭ ପଦାଙ୍କେ ମୋ ଗତି ।"

ରାଜାର ଯାହା ଧର୍ମ,ସହଧର୍ମିଣୀ ରାଣୀର ମଧ୍ୟ ତାହା ହିଁ ଧର୍ମ —ଏହା ଏକ ସ୍ୱାଭାବିକ ସିଦ୍ଧାନ୍ତ । ତେଣୁ ପ୍ରଜାରଞ୍ଜନ ରାଜା ରାମ ପାଇଁ ଯଦି କର୍ତ୍ତବ୍ୟ ହେଲା ସୀତା ତ୍ୟାଗ, ସୀତା ପାଇଁ ମଧ୍ୟ ତାହା ହିଁ ହେବ କର୍ତ୍ତବ୍ୟ । ଏହା ଏକ ଅପୂର୍ବ ଆଦର୍ଶ ଚିନ୍ତା, ଯାହା ଯୋଗୁଁ ମେହେରଙ୍କ ସୀତା ସମସ୍ତ ରାମାୟଣ ପରମ୍ପରାରେ ଏକ ନୂଆ ସୀତା ରୂପେ ଅବତୀର୍ଣ୍ଣ ହେଲେ ।

ତଥାପି ଦୁଃଖ ଦୁର୍ନିବାର—ତାହା ହିଁ ଅଳଙ୍ଘନୀୟ ନିୟତି । ମୁକ୍ତ କଣ୍ଠରେ ବିଳାପ କରି ସତୀ ଶାନ୍ତମୟ ବାଲ୍ମୀକି ଆଶ୍ରମର ଲତା ପାଦପ, ହରିଣାଦି ପଶୁ ଏବଂ ତାପସ ତାପସୀଙ୍କ ଜୀବନକୁ ଆବିଷ୍ଟ କରି ତୋଳିଲେ ଆପଣାର ଶୋକ ସମ୍ବାଦରେ । ତାପସ ତାପସୀଙ୍କ ସହ ଆସିଲେ ମହାମୁନୀ ବାଲ୍ମୀକି, ପରିଚୟ ଏବଂ ଆଶ୍ୱାସନା ଦେଇ ସୀତାଙ୍କୁ ଘେନିଗଲେ କୁଟୀରକୁ । ମାତୃକଳ୍ପା ଅନୁକମ୍ପାଙ୍କ ସ୍ନେହ ଆଦରରେ ସୀତା ଅଧିକ ପ୍ରକୃତିସ୍ଥ ହୋଇ ପଣସ, କଦଳୀ, ଜାଲମ୍ବୁ, କୋଳି, ପ୍ରଭୃତି ଋଷି ଆଶ୍ରମର ବନ୍ୟଫଳ ଭୋଜନ କରି ତାପସୀ ସଖୀ ସହ ତୃଣଶଯ୍ୟାରେ ବିଶ୍ରାମ ନେଲେ ।

ଅଯୋଧ୍ୟାର ରାଜରାଣୀ ସୀତା । ମାତ୍ର କେତୋଟି ଘଣ୍ଟା ପୂର୍ବର ସେହି ସତ୍ୟ ନିୟତି ବିଧାନରେ ବଦଳି ଯାଇଛି । ରାମ ରାଜାର ଆଦେଶରେ ପଦଚ୍ୟୁତା ରାଜରାଣୀ ହୋଇଛନ୍ତି ମୁହୂର୍ତ୍ତିକରେ ଭିକାରୁଣୀ । ଆତ୍ମଦୋଷ ଦେଖିଲେ କ୍ଷଣିକ ଆଶ୍ୱାସନା ମିଳିବ ସିନା, ଏକ ସମ୍ପୂର୍ଣ୍ଣ ମାନସିକ ଶାନ୍ତି ମଧ୍ୟରେ ନିଦ୍ରା ବା କାହୁଁ ଆସିବ ! ବିନିଦ୍ର ରଜନୀ କଟାଇବା ବେଳେ ନୀରବରେ ଅଶ୍ରୁ ବିସର୍ଜନ କରି କରି ରାତି ଶେଷରେ ହୁଏତ ଚାରଦୂତଙ୍କ ମୁହଁରେ ରାମଙ୍କ ହୃଦୟ ମନର ପ୍ରକୃତ ସ୍ୱରୂପର ସମ୍ବାଦ ପାଇଲେ । ସେହି ରଜନୀରେ

ଅଯୋଧ୍ୟାରେ ଆଉ ଜଣେ ମଧ୍ୟ ନୀରବ ଅଶ୍ରୁ ବିସର୍ଜନ କରୁଥିଲେ । ସେ ରାଜା ରାମ ନୁହନ୍ତି, ପ୍ରେମିକ ରାମ—ସୀତାପତି ଜାନକୀବଲ୍ଲଭ ରାମ । ରାଜକର୍ମର ଦାୟିତ୍ୱ, ପ୍ରଜାରଞ୍ଜନର ଦାବୀ ଏବଂ ରାଜଦଣ୍ଡର କ୍ରୂର ଶାସନରେ ସୀତା ନିର୍ବାସିତା ହେଲେ—ରାଜଧର୍ମର କଠୋର ପ୍ରୟୋଗ ଯୋଗୁଁ । କିନ୍ତୁ ନିଭୃତରେ ସମସ୍ତଙ୍କ ଅଲକ୍ଷ୍ୟରେ ହୃଦୟ ମଧ୍ୟରେ ନିଷ୍କଳଙ୍କ ତଥା ପ୍ରେମାନୁରାଗିଣୀ ଜାନକୀଙ୍କର ଆରାଧନା ରାଜକର୍ତ୍ତବ୍ୟର ବିରୋଧ ତ ଅଣ୍ଡ୍ର ନାହିଁ । ତାହା ହିଁ କରୁଥିଲେ ରାମ । ଲୋକଚକ୍ଷୁରେ ଆଦର୍ଶ ସର୍ବଂସହ ରାଜା, ବ୍ୟକ୍ତିଗତ ଜୀବନରେ ଚିରବିରହୀ ସୀତାପତି । ବିଚିତ୍ର ଏ ସଂଯୋଗ । ଆଦର୍ଶର ପାଳନ ରକ୍ଷଣ ଯେପରି ଅଲଙ୍ଘନୀୟ, ତଜ୍ଜନିତ ଦୁର୍ବିସହ କଷଣ ସେହିପରି ଅବଶ୍ୟ ଅଙ୍ଗୀକାର କରିବାକୁ ହେବ । ଦୁଇଟି ସ୍ଥାନରେ ଦୁଇଟି ଆତ୍ମା ମଧ୍ୟରେ ସତେ ଅବା ତଡ଼ିତ୍ ସଂଯୋଗ ହେଲା ତାର-ଦୂତ ମାଧ୍ୟମରେ । ସମଗ୍ର ବିନିଦ୍ର ରଜନୀର ସନ୍ତାପ ମଧ୍ୟରେ ସୀତା କରୁଥିଲେ ଆତ୍ମପରୀକ୍ଷା ; ରାମଙ୍କର ହୃଦୟରୁ ଉତ୍ପାଟିତ ହେଲା ଭଳି କିଛି ସେ କରି ନାହାନ୍ତି । ଏହି ଆଶ୍ୱାସନାରେ ତାଙ୍କୁ ଦେଖାଗଲା ପ୍ରେମମୟ ରାମର ହୃଦୟ ଦୃଶ୍ୟ ;—ଆହା, କେତେ ଦୁଃଖ ରାମ ସହୁଛନ୍ତି ! ଶୋକ ସତ୍ତ୍ୱେ ମଙ୍ଗଳ ପ୍ରଭାତର ଉଷା ବନ୍ଦନା ବେଳେ ସ୍ୱଚ୍ଛ ହୃଦୟରେ ପ୍ରାର୍ଥନା କଲେ ରାମ ବଧୂ "ଶୁଭ ସମ୍ପାଦନୀ ହୁଅ ରଘୁବଂଶୀକେ ।"

ଆଶ୍ରମ-ଜୀବନ ଆରମ୍ଭ ହେଲା । ଆଶ୍ରମଧାତ୍ରୀ ମାତୃସମା ତମସା ଶୀତଳ ଜଳଧାରାରେ ଧୋଇଦେଲା ସୀତାର ସକଳ ଉତ୍ତେଜନା, ସକଳ ସନ୍ତାପ । ବନଭୂମିର ପତ୍ର, ପୁଷ୍ପ, ଭ୍ରମର, ବିହଙ୍ଗ, ଚମ୍ପକ, ପାରିଜାତ, ମନ୍ଦାର,ଷଟ୍‌ପଦ କୌଶଳରେ ନେଲେ ସୀତାଙ୍କର କେଶକାନ୍ତି, ତନୁଲାବଣ୍ୟ, ଅଧର, ଭଙ୍ଗିମା, ସାଧିକା ତପସ୍ୱିନୀ ଜୀବନର ଆରମ୍ଭରେ ଏ ସହଚରୀ ପ୍ରକୃତି ସୀତାର ଦେହସଜ୍ଜା କରିଦେଲା ତା ଦେହର ସମସ୍ତ କୃତ୍ରିମ ପ୍ରସାଧନ ଧୌତ କରିଦେବା ଦ୍ୱାରା । ବିଳାସିନୀ ରାଜରାଣୀ ସୀତାର ଭୂଷଣ ପ୍ରସାଧନ ସବୁ ନେଇ ଅମର ଗୌରବ ଲାଭ କଲା ବାଲ୍ମୀକି ଆଶ୍ରମର ପ୍ରକୃତି । ବନମଧ୍ୟରେ ପଦେ ପଦେ ଆପଣାର ଆଦର୍ଶରେ ଅନୁପ୍ରାଣିତ କରି ସୀତା ଅନ୍ତରର ଧୈର୍ଯ୍ୟଶୀଳ ଆତ୍ମଶାସନକୁ ବଳିଷ୍ଠ କରି ତୋଳିଲା । ଅନୁକମ୍ପାଙ୍କ ସ୍ନେହଶୀଳ ନିର୍ଦ୍ଦେଶରେ ସୀତା ହେଲେ ଆଶ୍ରମ କନ୍ୟାଙ୍କର ଉତ୍ସାହଦାତ୍ରୀ ପ୍ରେରଣା; ଚିରତପସ୍ୱିନୀ ଭାବେ ସୀତାର ସିଦ୍ଧିକୁ ପ୍ରଶଂସା କରି ସେ କହିଲେ—ଦେବ ଦ୍ୱିଜଗୁରୁ ବୁଧ ପୂଜନ, ବ୍ରହ୍ମଚର୍ଯ୍ୟ ଅହିଂସା ଶୌଚସାରଲ୍ୟ ସତ୍ୟାନ୍ୱେଷଣ, ଲୋକହିତ ନିଷ୍ଠତା ସୀତାର ଆଜନ୍ମ ସିଦ୍ଧି ; ତେଣୁ ସେ ଚିର

ତପସ୍ୱିନୀ । ବଧୂ ଓ ଗୃହିଣୀ ଭାବରେ ମଧ୍ୟ ସେ ଥିଲେ ତପସ୍ୱିନୀ । ଆଉ କେଉଁଠି ଶରୀର କର୍ଷଣ ମଧ୍ୟରେ ତପସ୍ୟା ଲୋଡ଼ା ନାହିଁ ।

ବାସ୍ତବରେ ଗଙ୍ଗାଧର ସୀତାଙ୍କୁ ତପସ୍ୱିନୀ କରି କଳ୍ପନା କଲାବେଳେ ତାଙ୍କୁ ଜଟା-ବଲ୍‌କଲ-ଧାରିଣୀ କରି ନିରାହାର-ଅଗ୍ନିସେବାଦି କଠୋର କାର୍ଯ୍ୟରେ ତାଙ୍କ ଅନ୍ତରର ନିଷ୍ଠା ଓ ଧୈର୍ଯ୍ୟ ପରୀକ୍ଷାର ବ୍ୟବସ୍ଥା କରିନାହାନ୍ତି । ଏ ତପସ୍ୱିନୀର ଏକାଗ୍ର ମନର କେନ୍ଦ୍ରରେ ରାମ ଓ ରାମପ୍ରେମ । ସେହି ରାମପ୍ରେମନିଷ୍ଠା ଏ ରାମବଧୂଙ୍କୁ କରିଛି ରାମ-ତପସ୍ୱିନୀ । ଘଟଣା ବିହୀନ ଆଶ୍ରମ-ଜୀବନରେ କାଳ କ୍ଷେପଣ ପାଇଁ ସୀତାର କି ଅବଲମ୍ବନ ଥିଲା ? ଥିଲା କେବଳ ତାଙ୍କ ମନ । ସେହି ମନ ନେଇ ସେ କରୁଥିଲେ ଅତୀତ ସ୍ମରଣ—ପ୍ରେମିକ ପତିଙ୍କ ପ୍ରେମର ଶତ ସ୍ମୃତି ବିଜଡ଼ିତ ଅନୁଭବ ହିଁ ମନ ମଧ୍ୟରୁ ଚୟନ କରି ରାମଙ୍କୁ ବିଶୁଦ୍ଧ ଭାବେ ବରଣ କରୁଥିଲେ ପ୍ରତିନିୟତ । ତାପସୀ ସଖୀର ପ୍ରଶ୍ନରେ ହସ୍ତାନ୍ତର ସହିତ ସେହି ଅନୁଭୂତିଗୁଡ଼ିକ ବର୍ଣ୍ଣନା କରି କହୁଥିଲେ, "ସେହି ସେ ପ୍ରେମମୟ କରୁଣାସାଗର ସ୍ୱାମୀ । ମୋତେ ନିକଟରୁ ଅନ୍ତର କରିଦେବାରେ ଶତଧା ବିଦୀର୍ଣ୍ଣ ହୋଇଥିବ ତାଙ୍କ ହୃଦୟ । ତଥାପି ଲୋକ-ସେବକ ରାଜା ଲୋକରଞ୍ଜନ ପାଇଁ ତାହା ସ୍ୱୀକାର କରି ଆଜୀବନ ଦୁଃଖ ବରଣ କରିଛନ୍ତି ।" ଏହି ସ୍ମରଣ ଏବଂ କୀର୍ତ୍ତନ ହିଁ ଥିଲା ଏହି ପ୍ରେମ ପାଗଳିନୀର ଏକମାତ୍ର କର୍ତ୍ତବ୍ୟ । ଋତୁ ପରେ ଋତୁ ଆସିଛି, ପ୍ରକୃତିରେ ଫୁଟିଛି କେତେ ନୂଆ ଫୁଲ, ବିଦାୟ ନେଇ ଯାଇଛନ୍ତି ଅନ୍ୟମାନେ ଲୋକସେବା ଶେଷରେ । ଗ୍ରୀଷ୍ମର ମଲ୍ଲିକା, ପଦ୍ମିନୀ, ବର୍ଷାର ବ୍ରହ୍ମବ୍ରଣୀ କେତକୀ ଇତ୍ୟାଦି ଆସିଛନ୍ତି, ଆପଣା ଜୀବନର ସୁଖ ଦୁଃଖ କଥାର ସୂଚନା ଦେଇ ଆଶ୍ୱସ୍ତ କରିଛନ୍ତି ସତୀ ଅନ୍ତରକୁ—ବିଶ୍ୱାସ ଦେଇଛନ୍ତି ସୁଖ ବା ଦୁଃଖ ଯାହା ଆସୁ, ପ୍ରକୃତ ପ୍ରେମର ଅନ୍ତ ନାହିଁ ; ପ୍ରେମିକ ଓ ପ୍ରେମିକାର ଆପାତ-ବିରହ ସ୍ଥାୟୀ ନୁହେଁ ;—ବରଂ "ମନେ ଯେବେ ସଙ୍ଗ ହୋଇନାହିଁ ଭଙ୍ଗ, ସେହି ସୁଖ ସୁଖେ ଗଣ୍ୟ ।"

ତେଣୁ ଗଙ୍ଗାଧରଙ୍କ ତପସ୍ୱିନୀ କାବ୍ୟ ଏକ ସୀତା-କାବ୍ୟ- [illegible]ହାର ଏକମାତ୍ର ଚରିତ୍ର ହେଉଛି ସୀତାଙ୍କ ମନ ; ଏକ ପାର୍ଶ୍ୱବର୍ତ୍ତୀ [illegible] ରୂପେ ରହିଛି ବାଲ୍ମୀକି ଆଶ୍ରମର କାନ୍ତିମୟୀ ତପସ୍ୱିନୀ ପ୍ରକୃତି । ସୀତାଙ୍କ ଜୀବନର ମାତ୍ର ୪।୫ ମାସ ମଧ୍ୟରେ ଏହି ମନଶ୍ଚିତ୍ର ଦେବାରେ କାବ୍ୟର ଆଠୋଟି ସର୍ଗ ଯାଇଛି । ନବମ ସର୍ଗରେ ଶ୍ରାବଣୀ ରଜନୀର ଅନ୍ଧକାର ମଧ୍ୟରେ ଅଶନିର [illegible] ଫୁଟିଲା ବେଳେ କୁଟୀରକୁ ଉଜ୍ଜ୍ୱଳ କରି ଭୂମିଷ୍ଠ ହେଲେ ସୀତାଙ୍କର ଯମଜ

ସନ୍ତାନ—କୁଶ ଆଉ ଲବ । ରଘୁବଂଶର କୁଳାଙ୍କୁର ଏହି ସନ୍ତାନର ପଥ ଚାହିଁ ବଞ୍ଚି ଥିଲେ ସୀତା । କାରଣ ସୀତା ଯେଉଁ 'ପତିବ୍ରତ ସାଧନା' ତପସ୍ୟା କରୁଥିଲେ ସେହି ବ୍ରତ ହେଉଛି ପତିଙ୍କ ବଂଶରକ୍ଷା ବିଧାନ । ସୀତା ଛଡ଼ା ଆଉ କେହି ଏ ସେବା କରିପାରିବେ ନାହିଁ । ଜନନୀର ଜୀବନକୁ ଧନ୍ୟ କରି ପଦେ ପଦେ ମାତାର ସମଗ୍ର ସମସ୍ତକୁ ଆଚ୍ଛନ୍ନ ଆବିଷ୍ଟ କରିଦେଲେ ଏହି ଆତ୍ମଜ ସଙ୍ଗୀଦ୍ୱୟ । ସେମାନଙ୍କୁ ପାଇ ସୀତା ପୁଣି ଅଭିନବ କର୍ମବ୍ୟାପୃତ ମଧ୍ୟରେ ଏକ ନୂତନ ଜୀବନର ସ୍ୱାଦରେ ବିଭୋର ହୋଇଉଠିଲେ—ଏ ସ୍ୱାଦର ଉତ୍ସ ହେଉଛି ବାତ୍ସଲ୍ୟ । କାବ୍ୟର ଦଶମ ସର୍ଗର ବର୍ଣ୍ଣନାରେ ଲବକୁଶଙ୍କ ଶୈଶବର ବାରଟି ବର୍ଷର କେତେ କଉତୁକ ସ୍ଥାନ ପାଇଛି । ଏ ସବୁର ଅଭିନବ ଅନୁଭବରେ ସୀତାଙ୍କ ସ୍ମୃତି-ଗନ୍ତାଘର ପୂର୍ଣ୍ଣ ହୋଇଉଠିଛି । ନିକଟରେ ରାମ ନାହାନ୍ତି, ଅଛନ୍ତି ତାଙ୍କ ଆତ୍ମଜ ଯୁଗଳ— ଅମୃତମୟ ଶିଶୁ । ସେମାନେ ନିଜ ପରିଚୟ ଜାଣନ୍ତି ତପସ୍ୱିନୀର ସନ୍ତାନ ମାତ୍ର । ତାଙ୍କର ଅପର ପରିଚୟ ହେଲା ଯେ ସେମାନେ ବୀଣା ବଜାଇ ଲଳିତ କଣ୍ଠରେ ବାଲ୍ମୀକି ରଚିତ ରାମାୟଣ ଗାନ କରି ତପସ୍ୱିନୀ ସମେତ ସମଗ୍ର ଆଶ୍ରମବାସୀଙ୍କ ଜୀବନରେ ଜାଗରିତ କରି ରଖିଥାନ୍ତି ରାମ-ସୀତା ପ୍ରେମାଦର୍ଶର ଅମର କାହାଣୀ । ତପସ୍ୱିନୀ ସୀତାଙ୍କ ଅଶ୍ରୁର ପ୍ଲାବନ ମଧ୍ୟରେ ଦିଅନ୍ତି ନିତ୍ୟନୂତନ ପ୍ରେମର ସ୍ୱାଦ, ଆଶ୍ୱାସନା ଓ ଶପଥ ।

ଏକାଦଶ ସର୍ଗର ଆରମ୍ଭରେ ଆସିଛି ରାମଙ୍କ ଅଶ୍ୱମେଧ ଯଜ୍ଞରେ ଯୋଗଦେବା ଲାଗି ବଶିଷ୍ଠ ବାଲ୍ମୀକିଙ୍କ ନିକଟକୁ ନିମନ୍ତ୍ରଣ । ବାଲ୍ମୀକି ସ୍ୱୟଂ ଆସି ସୀତାଙ୍କୁ ଜଣାଇ ଗଲେ ; କହିଗଲେ ଲବକୁଶ ମଧ୍ୟ ଯିବେ ଓ ରାମାୟଣ ଗାନ କରିବେ । ଦୁଃଖିନୀ ସୀତାଙ୍କ ଜୀବନରେ ଆସିଲା କଠୋର ପରୀକ୍ଷାର ବେଳ—ଧୈର୍ଯ୍ୟଭଙ୍ଗର ମୁହୂର୍ତ୍ତ । ଯଜ୍ଞର ସଙ୍କଳ୍ପ କାଳରେ ରାମଙ୍କର ସହଧର୍ମିଣୀ ତାହାହେଲେ କିଏ ହେବ ? ନିଶ୍ଚୟ ଅନ୍ୟ କୌଣସି ନାରୀକୁ ପତ୍ନୀ ପଦରେ ବରଣ କରିଥିବେ ପ୍ରଭୁ ରାମଚନ୍ଦ୍ର । ଓ ହୋ ! ଶତଚ୍ଛିନ୍ନ ହୋଇ ଉଠିଲା ସୀତାର ଅନ୍ତର ଏ ସମ୍ଭାବନାରେ । ମନେ ହେଲା ତପସ୍ୱିନୀର ଧୈର୍ଯ୍ୟ ଭଙ୍ଗ ହେବ । କିନ୍ତୁ ଏଥିପାଇଁ ରାମଙ୍କୁ ଦୋଷ ଦେବାର ମୁହୂର୍ତ୍ତ ଆସିବା ପୂର୍ବରୁ ସୀତାଙ୍କର ପ୍ରଥମ ଚିନ୍ତା ହେଲା ଯେ ସେହି ଭାଗ୍ୟବତୀ ନାରୀ ଅବଶ୍ୟ ବହୁ ପୁଣ୍ୟବତୀ । ସେଭଳି ପୁଣ୍ୟ ନ ଥିଲେ ତାଙ୍କଠାରୁ ତାଙ୍କ ପ୍ରେମ-ଦେବତାଙ୍କୁ ସେ ଟାଣି ନେଇ ପାରିଥାନ୍ତା କି ? ତେଣୁ ପ୍ରଥମ ଭାବନାରେ ସୀତା ଏ ଦୁର୍ଭାଗ୍ୟ ଚିନ୍ତାକୁ ଆପଣାର ପ୍ରତିଯୋଗିନୀ ନିକଟରୁ ତାଙ୍କର ପରାଜୟ ବୋଲି ଗ୍ରହଣ କରିନେଲେ । କିନ୍ତୁ ସୀତା ଏ ପରାଜୟ ସ୍ୱୀକାର କରିସିବେ କି ? ନା । ସୀତାଙ୍କ ସାଧନା ତଥାପି ସମ୍ପୂର୍ଣ୍ଣ

ହୋଇନାହିଁ । ଆନ୍ତର ନିଷ୍ଠା ଆବଶ୍ୟକ । କିଣ ସେ ମନ୍ତ୍ର, କେଉଁ ପବିତ୍ର ସ୍ଥାନରେ କେତେ ଯୁଗ ଧରି ଜପ କରି ସେହି ନୂତନା ରାମପତ୍ନୀ ଏତେ ପୁଣ୍ୟର ଅଧିକାରୀ ହେଲେ ? କିଏ କହିଦେବ, କିଏ ବାଟ ବତାଇବ ? ଶେଷରେ ସୀତା ଲେଖିଲେ ଏକ ପତ୍ର ସେହି ରାମଚନ୍ଦ୍ରଙ୍କ ନିକଟକୁ । ରାଣୀ ନିୟମ ପକାଇ ତପୋବନବାସିନୀର ଦାବୀ ଦର୍ଶାଇ ଅନୁରୋଧ କଲେ ତାଙ୍କର ଏ ନୂତନା ମନୋହାରିଣୀଙ୍କୁ ପଚାରି ସେହି ମନ୍ତ୍ରଟି ତପସ୍ୱିନୀକୁ ଜଣାଇ ଦେବେ । ଅବାରିତ ଅଶ୍ରୁଧାରା ଛୁଟିଥାଏ । ପତ୍ର ଶେଷ ହେବା ବେଳକୁ ଧାଇଁ ଧାଇଁ ଆସିଲେ ଲବକୁଶ ଏକ ବିଚିତ୍ର ସମ୍ବାଦ ନେଇ । ଅତୀବ ଉତ୍କଣ୍ଠାରେ କହିପକାଇଲେ, "ମା, ମା, ଜାଣିଲଣି । ସମସ୍ତେ ଧନ୍ୟ ଧନ୍ୟ କରୁଛନ୍ତି ରଘୁପତିଙ୍କୁ । ରାଜଧର୍ମ ଅନୁରୋଧରେ ଯେ ସୀତା ତ୍ୟାଗ କଲେ ସିନା, ଅଶ୍ୱମେଧ ସଙ୍କଳ୍ପ ପାଇଁ ଦ୍ୱିତୀୟ ବିବାହ ନ କରି ଜାନକୀଙ୍କର କନକ ପ୍ରତିମାକୁ ବାମ ଭାଗରେ ବସାଇଲେ । ତାଙ୍କର ପ୍ରେମଧର୍ମର ତୁଳନା ନାହିଁ ମା ! ସମସ୍ତେ ସେହି କଥା ଘୋଷି ହେଉଛନ୍ତି । କୁଆଡ଼େ ଗଲେ ମା ସେ ଜନକନନ୍ଦିନୀ ? ଆମେ କାଲି ସକାଳେ ଗଲେ ସେହି ଅମର କୀର୍ତ୍ତି ରଘୁପତି ରାମଚନ୍ଦ୍ରଙ୍କ ଦର୍ଶନ ଲାଭ କରିବୁଁ ।" ଏ କଣ ଶୁଣୁଛନ୍ତି ସୀତା ? ଏହି ତେବେ ତାଙ୍କ ହୃଦୟର ରାମ !—ଜାନକୀବଲ୍ଲଭ ଚିରଦିନ ଜାନକୀ-ବଲ୍ଲଭ ହୋଇ ହିଁ ରହିଗଲେ । ନିଜକୁ ଶତ ଧିକ୍କାର କରି ସାଶ୍ରୁମୁଖରେ ଚିରି ପକାଇଲେ ଏହି ପତ୍ରଟିକୁ ।

ଆଜି ରାତିରେ ବି ନିଦ୍ରା ନାହିଁ । କିନ୍ତୁ ବାର ବର୍ଷ ତଳର ସେ ପ୍ରଥମ ରାତିପରି ଏ ରାତି ନୁହେଁ ବେଦନାର, ଯନ୍ତ୍ରଣାର ;—ଆଜି ଅପୂର୍ବ ଆନନ୍ଦର ଉଚ୍ଛ୍ୱାସରେ ଭରି ଉଠିଛି ସୀତାର ଅନ୍ତର । ତପସ୍ୱିନୀର ତପଃସାଧନା ସତେ ଅବା ସମ୍ପୂର୍ଣ୍ଣ ହୋଇଛି । ଆପଣା ଜୀବନର ଯାହା ହୋଇଥାନ୍ତା ଚରମ ଦୁଃଖର ଗାଥା—ସେହି ସପତ୍ନୀ ସମ୍ଭାବନାକୁ ମଧ୍ୟ ତପସ୍ୱିନୀ ସୀତା ଆପଣାର ତପସ୍ୟା ପାଇଁ ଉପଯୋଗ କରିଦେଇ ନିୟତିର ଏ ପରିହାସକୁ ଅତିକ୍ରମ କରିଗଲେ । ଦେବତା ସତେ ଅବା ପରୀକ୍ଷା କରୁଥିଲେ । ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି ସତୀ । କିନ୍ତୁ ଫଳ କାହିଁ ?

ରାତି ଶେଷକୁ ଯୋଗମାୟା ସ୍ୱୟଂ ଆସି ନିଦ୍ରାବିଧାନ କରିଛନ୍ତି ସୀତାଙ୍କ ଚକ୍ଷୁରେ ଏବଂ ତପସ୍ୟାର ଫଳ ସ୍ୱରୂପ ଦର୍ଶାଇଛନ୍ତି ଏକ ଲୋଭନୀୟ ସ୍ୱପ୍ନ । ଅନନ୍ତ ଭବିଷ୍ୟତର ସ୍ୱପ୍ନ । ଲୋକମୁଖରେ କଳଙ୍କିନୀ ସୀତା ରାମ ଚକ୍ଷୁରେ ଯେ ହେଲେ ଚିରପ୍ରଣୟିନୀ ସୀତା, ତାହାର ଏକ ଦୃଶ୍ୟପଟ ଦେଖିଲେ ସୀତା । ରାମଙ୍କ ବାମ-

ସ୍ୱଗରେ ଆସୀନା ସୀତା, ଭରତ-ଶତ୍ରୁଘ୍ନ ଲକ୍ଷ୍ମଣ ସେବା ନିରତ । କୋଳରେ ଲବ ଆଉ କୁଶ । ବାଜୁଛି ଘଣ୍ଟ-ଘଣ୍ଟା-କାହାଳୀ-ମର୍ଦ୍ଦଳ । "ଜୟ ସୀତାରାମ", "ଜୟ ସୀତାରାମ", ଧ୍ୱନିରେ ପୂରି ଉଠୁଛି ଜଗତ୍ । ସ୍ୱପ୍ନର ଶେଷ ନାହିଁ— ଚାଲିଛି, ଚାଲିଛି— କବିଙ୍କ କାବ୍ୟର ସମାପ୍ତି ଘଟିଛି ।

ଏହା ହିଁ ତପସ୍ୱିନୀର ସିଦ୍ଧି ଓ ଫଳ । ରକ୍ତମାଂସର ଦେହ ସହିଲା ବିରହର ପ୍ରଚଣ୍ଡ କଷଣ । ଆତ୍ମିକ ଦେହ ହେଲା ଚିରଂଜୀବ । ଏକ ଚିରନ୍ତନ ଆଦର୍ଶର ପୂଜାଂଶୁ ପ୍ରକାଶିଣୀ ରାମ ସୀତା ହେଲେ ସହସ୍ର ସହସ୍ର ବର୍ଷବ୍ୟାପୀ ଅନନ୍ତ ଭବିଷ୍ୟତର ଚିରପୂଜିତ ପ୍ରଣୟ-ପ୍ରଣୟିନୀ ।

ଆଲୋଚନା :

"ତପସ୍ୱିନୀ" କାବ୍ୟର ଏ କଥାବସ୍ତୁ ଓ ବର୍ଣ୍ଣନା ମଧ୍ୟରେ ବାଲ୍ମୀକି କାଳିଦାସ ଓ ଭବଭୂତି—ମହାକବି ତ୍ରୟଙ୍କ ଭାବଧାରାର ଛାୟା ଅଛି । ଏ ନିର୍ବାସନ କାହାଣୀର ମୂଳ ସ୍ରଷ୍ଟା ଆଦିକବି ବାଲ୍ମୀକି ; କାଳିଦାସଙ୍କ 'ରଘୁବଂଶ' ର ଚତୁର୍ଦ୍ଦଶ ସର୍ଗରେ 'ତପସ୍ୱିନୀ' ନାମକରଣର ବୀଜ ଅଛି ; ଏବଂ "ତପସ୍ୱିନୀ"ର ପ୍ରକୃତି ଚିତ୍ରରେ ତା'ର ଛାୟା ଅଛି; ପରିଶେଷରେ ପ୍ରଜାରଞ୍ଜନ-ଆଦର୍ଶ ଉପସ୍ଥାପନ ସମ୍ପର୍କରେ ଭବଭୂତିଙ୍କ "ଉତ୍ତର ରାମ-ଚରିତ" ର ଅଷ୍ଟାବକ୍ର ଋଷି ପ୍ରସଙ୍ଗର ମଧ୍ୟ ଉଲ୍ଲେଖ ଅଛି । ପୁନଶ୍ଚ ଏକାଦଶ ସର୍ଗର ସେହି ପ୍ରସିଦ୍ଧ ସୀତାଙ୍କ ଚିଠିରେ ରାଧାନାଥୀ ପତ୍ରାଳଙ୍କନ ଶୈଳୀ ସହ ରହିଛି ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ କଳ୍ପନାନୁଯାୟୀ ଅଶ୍ୱମେଧ ବୃତ୍ତାନ୍ତର ସ୍ଥାନାନ୍ତର ନିଯୋଜନ । ଏହି କୀର୍ତ୍ତିଶାଳୀ ସାହିତ୍ୟକାରମାନଙ୍କ ରଚନାର ଏ ପ୍ରଭାବ କିନ୍ତୁ କ୍ଷୀଣ ଓ ସୀମିତ । କାରଣ ଏମାନଙ୍କ ରଚନାରେ ସୀତାର ମନଶ୍ଚିନ୍ତ ଅବଶ୍ୟ ବ୍ୟଞ୍ଜିତ ହୋଇଛି ; କିନ୍ତୁ କେବଳ ମାତ୍ର ସୀତାର ମନକୁ ନେଇ ଏକ ରାମ-ତପସ୍ୱିନୀ ଅଙ୍କନ କରିବା ବିଷୟରେ ଗଙ୍ଗାଧର କୌଣସି ପୂର୍ବସୂରିଙ୍କ ଠାରେ ଋଣୀ ନୁହନ୍ତି । ପରିଶେଷରେ କର୍ମନିଷ୍ଠତାର ଭିତ୍ତିରେ ଆତ୍ମସମୀକ୍ଷା-କାରିଣୀ ଜନକନନ୍ଦିନୀ ସୀତା ଏକ ସମ୍ପୂର୍ଣ୍ଣ ଅଭିନବ କଳ୍ପନା । କାବ୍ୟର ଗତି-ଧାରାରେ ଘଟଣା ବିହୀନ ମନର ଭାବକୁ ରୂପ ଦେବାଲାଗି ପ୍ରକୃତିର ଯେଉଁ ଉପଯୋଗ ପରିକଳ୍ପିତ ହୋଇଛି ତାହା ମଧ୍ୟ ସାମଗ୍ରିକ ଭାବେ ଏକ ଶିଳ୍ପ ଗୌରବର ପରାକାଷ୍ଠା । ଏ ସକଳ ମୌଳିକତା ଯୋଗୁଁ ଏହି 'ତପସ୍ୱିନୀ' କାବ୍ୟକୁ ମେହେର ସୃଷ୍ଟିର ମୁକୁଟମଣି କହିବା ସର୍ବତୋଭାବେ ଯୁକ୍ତିଯୁକ୍ତ । ଓଡ଼ିଆ ସାହିତ୍ୟରେ ଏଭଳି ମନସ୍ତାତ୍ତ୍ୱିକ କାବ୍ୟ

କେବେ ରଚିତ ହୋଇ ନ ଥିଲା । ମେହେରଙ୍କ 'ହଲଦଲକ୍ଷ୍ମୀ' ରେ ଏକ ନୂତନ ମାର୍ଗର ସନ୍ଧାନ ପାଇ ଆନନ୍ଦ ଲାଭ କରିଥିଲେ । ଜୀବନର ପରିପକ୍ୱ ଅଭିଜ୍ଞତାର ଚୂଡ଼ାନ୍ତ ଅବଦାନ 'ତପସ୍ୱିନୀ' ମଧ୍ୟ ଏକ ଅଭିନବ ମାର୍ଗ । କବି ମାଧୁରୀ ମାନସିଂହ ସୀତାଙ୍କର ଏ ଅଧ୍ୟାତ୍ମ ତପସ୍ୟାର ଉପଲବ୍ଧି ସହିତ ଭାବ୍ୟରେ ଏହି କଷ୍ଟକର ଜୀବନ ବର୍ଣ୍ଣନାରେ ମେହେରଙ୍କ ସିଦ୍ଧି ଯୋଗ୍ୟ ଭୂୟସୀ ପ୍ରଶଂସା କରି-ଯାଇଛନ୍ତି । କବି ଦୀନକୃଷ୍ଣଙ୍କ କଥାରେ କହିଲେ—"କବି ହୋଇଲେ ଜାଣିବ ଏଥି ଶ୍ରମ ହିଁ କେତେ ଯେ ।" ଓଡ଼ିଶାରେ ଗଙ୍ଗାଧର-କବିତାର ପ୍ରକୃତ ତତ୍ତ୍ୱଗ୍ରାହକ ଥିଲେ ରାଧାନାଥ । ଦୁର୍ଭାଗ୍ୟକୁ 'ପ୍ରଣୟ ବଲ୍ଲରୀ' ଓ 'ତପସ୍ୱିନୀ' ପ୍ରକାଶନ ସମୟକୁ ରାଧାନାଥ ଆଉ ନ ଥିଲେ ।

## 'ଅର୍ଘ୍ୟଥାଳୀ' : ଗୀତିକାର ଗଙ୍ଗାଧର

ଗଙ୍ଗାଧରଙ୍କର ଅନେକ କ୍ଷୁଦ୍ର କବିତା ୧୯୧୦ ରୁ ୧୯୧୯ ମଧ୍ୟରେ ରଚିତ ହୋଇ ଓଡ଼ିଶାର ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା । ଏଗୁଡ଼ିକ ସଙ୍କଳିତ ହୋଇ ପ୍ରଥମେ ୧୯୧୮ ରେ 'ଅର୍ଘ୍ୟଥାଳୀ' ନାମରେ ପ୍ରକାଶିତ ହୋଇଥିଲା । ଗ୍ରନ୍ଥାବଳୀ ୨ୟ ସଂସ୍କରଣ (୧୯୫୭)ରେ ଅନ୍ତର୍ଭୁକ୍ତ 'ଅର୍ଘ୍ୟଥାଳୀ'ରେ ୩୯ଟି କବିତା ସନ୍ନିବେଶିତ : କିନ୍ତୁ ୧୯୫୭ ପରେ ମଧ୍ୟ ଗଙ୍ଗାଧରଙ୍କ ଦ୍ୱାରା ରଚିତ ଓ ପ୍ରକାଶିତ ଅପର କେତେକ କବିତା ଓ ଅନ୍ୟାନ୍ୟ ରଚନା ଆବିଷ୍କୃତ ହୋଇଛି । ତେଣୁ ଗ୍ରନ୍ଥାବଳୀର ସଙ୍କଳନ ବେଳେ ସମଗ୍ର ରଚନା ସଂଗ୍ରହ କରିବାରେ ଆବଶ୍ୟକ ଯତ୍ନ ଯେ ନିଆଯାଇନାହିଁ ତାହା ଏଥିରୁ ଆପେ ପ୍ରମାଣିତ ହୁଏ ।

ଏ କବିତାଗୁଡ଼ିକ ବିଭିନ୍ନ ସମୟରେ ରଚିତ । ଅନେକ କବିତାରେ ସେ କାଳରେ ଘଟିଥିବା ମୁଖ୍ୟ ଘଟଣାଗୁଡ଼ିକର ପ୍ରତିଫଳନ ଅତି ସ୍ପଷ୍ଟ । ଏ କବିତାଗୁଡ଼ିକର ଅବଲମ୍ବନରେ ଓଡ଼ିଶାରେ ସେତେବେଳେ ପ୍ରକାଶିତ ଓ ପ୍ରଚଳିତ ପ୍ରାୟ ସମସ୍ତ ପତ୍ରପତ୍ରିକାର ନାମ ତଥା ଜନସେବାର ପରିଚୟ ରହିଛି । ତେଣୁ ସମୟର ସ୍ପନ୍ଦନ ସହିତ ଆଶା ଆଶଙ୍କା ଏବଂ ସୁଖ ଦୁଃଖର ପ୍ରତିବିମ୍ବ ବହନ କରି ଏମାନେ ମେହେରଙ୍କ ସ୍ପନ୍ଦନଶୀଳ ଅନ୍ତରର ସୂଚକ ହେବା ସଙ୍ଗେ ସଙ୍ଗେ ସମ-କାଳୀନ ଯୁଗଚେତନା ଓ ଯୁଗ-ଯନ୍ତ୍ରଣାର ବାର୍ତ୍ତାବହ ରୂପେ ଇତିହାସର ଧାରା ଦର୍ଶାଇବାରେ ମଧ୍ୟ ସହାୟକ ହୋଇଛନ୍ତି ।

ଭାବ ଦୃଷ୍ଟିରୁ ଏ ଗୁଡ଼ିକୁ ନିମ୍ନଲିଖିତ ବିଭାଗରେ ବିଭକ୍ତ କରାଯାଇପାରେ ;

(୧) ଧର୍ମ ଓ ଦର୍ଶନ ମୂଳକ ; (୨) ଭାଷା ପ୍ରୀତି ଓ ଜାତୀୟତାବୋଧ ମୂଳକ,— ଅନେକ କବିତାରେ କଠୋର ସମାଲୋଚନା, ସଂସ୍କାରମୂଳକ ସୂଚନା ଏବଂ ଅଭିମାନପୂର୍ଣ୍ଣ ଉଦ୍‌ବୋଧନ ରହିଛି ; (୩) ଲୋକ ଜୀବନରେ ଅନୈତିକତାର ସମାଲୋଚନାତ୍ମକ—ଏ ମଧ୍ୟରୁ କେତେକ ରୂପକଧର୍ମୀ ଯଥା 'ଖଦ୍ୟୋତର ଖେଦ', 'ନର ଓ ମୟୂର' ; ଅନେକରେ ପ୍ରତିପାଦ୍ୟ ହୋଇଛି ସୁନୀତି—ଉଦ୍ଦେଶ୍ୟ ସଂସ୍କାର ଓ ଉତ୍କର୍ଷଲାଭ; (୪) ପ୍ରକୃତି ବର୍ଣ୍ଣନାତ୍ମକ—ପଶ୍ଚିମ ଓଡ଼ିଶାର ପ୍ରସିଦ୍ଧ ସ୍ଥାନ, ଜନ ଓ ଦେବଦେବୀ ବା ତୀର୍ଥ (୫) ନୀତିଗର୍ଭକ; (୬) ଶୋକମୂଳକ; (୭) ଅନ୍ୟାନ୍ୟ । ପ୍ରାୟ ସବୁ କବିତାର ଉପଜୀବ୍ୟ ହୋଇଛି ସମସାମୟିକ ଜାତୀୟ ଜୀବନର ସମସ୍ୟା, ଅଭାବ ଓ ତାର ସମାଧାନ । ଏ ଗୁଡ଼ିକର ଶୈଳୀ କେତେକ ସ୍ଥଳରେ ବ୍ୟଙ୍ଗ ଓ ଆକ୍ଷେପୋକ୍ତିପୂର୍ଣ୍ଣ ; ଅନ୍ୟତ୍ର ପ୍ରତ୍ୟକ୍ଷ କଥନ । ନୀତିବାଦୀ ଗଙ୍ଗାଧର ଏହି ନୀତି କବିତା ଗୁଡ଼ିକ ମଧ୍ୟରେ ସମାଜର ଶୁଭାକାଂକ୍ଷୀରୂପେ ପ୍ରତୀୟମାନ ହୋଇଉଠିଛନ୍ତି । ତାଙ୍କ ଚରିତ୍ରର ମହତ୍ତ୍ୱ ଏବଂ ମୂଲ୍ୟବୋଧର ସ୍ୱଚ୍ଛତା ଓ ଉଦାରତା ଯୋଗୁଁ ଏ ସବୁର ଚିରନ୍ତନ ମୂଲ୍ୟ ଅନସ୍ୱୀକାର୍ଯ୍ୟ । ତାଙ୍କର ଶୋକ କବିତାଗୁଡ଼ିକରେ ବ୍ୟକ୍ତିଗତ ଅନୁଭୂତିର ସଂଯୋଗ ଯୋଗୁଁ କାରୁଣ୍ୟ ସହିତ ପ୍ରତିଷ୍ଠା-ନନ୍ଦନାର ଶୈଳୀ ହୃଦୟସ୍ପର୍ଶୀ ହୋଇଉଠିଛି ।

କବିତାର ଆଧୁନିକ ବିଭାଗ ଦୃଷ୍ଟିରୁ ଗଙ୍ଗାଧରଙ୍କ ଭକ୍ତି, ଅମୃତମୟ, ମଧୁମୟ କବିତା ତିନୋଟି ଧର୍ମ ଓ ଦାର୍ଶନିକ ଚେତନାର ବାହକ ହେଲେ ହେଁ ଏ ଗୁଡ଼ିକ ଅତି ସୁନ୍ଦର ଗୀତି କବିତା (ଲିରିକ୍)ର ଦୃଷ୍ଟାନ୍ତ । ଏଥିମଧ୍ୟରୁ 'ଭକ୍ତି' ଓ 'ମଧୁମୟ' କବିତାଦ୍ୱୟ ହେବ ଉଦବୋଧନମୂଳକ ଗୀତି କବିତା । ପଦ ଯୋଜନାର ଲାଳିତ୍ୟ ଏବଂ ଅନବଦ୍ୟ ଭାବୋଚ୍ଛ୍ୱାସ ଏହି ବୈଶିଷ୍ଟ୍ୟର କାରଣ । କେହି କେହି ଏ କବିତାର ସିଦ୍ଧିକୁ କବିଙ୍କ ଦରିଦ୍ର କରୁଣ ଜୀବନର ସ୍ୱାଭାବିକ ପ୍ରକାଶ ବୋଲି ନିର୍ଦ୍ଦେଶ କରନ୍ତି । କିନ୍ତୁ ଏ ଗୁଡ଼ିକ ରଚିତ ହୋଇଛି ୫୦ ବର୍ଷ ପୂର୍ତ୍ତିପରେ; ସେତେବେଳକୁ ଗଙ୍ଗାଧର ଏକ ସଙ୍ଗତି-ସଂପନ୍ନ ନିମ୍ନ ମଧ୍ୟବିତ୍ତ ବ୍ୟକ୍ତି । ଦ୍ୱିତୀୟତଃ 'ଭକ୍ତି' କବିତାର ସୁଦୃଢ଼ ଯୁକ୍ତି ଏକ ବଳିଷ୍ଠ ଅମ୍ଭଶକ୍ତିର ହିଁ ପ୍ରକାଶ; ଏବଂ ଅପର କବିତା ଦ୍ୱୟ—'ଅମୃତମୟ' ଓ 'ମଧୁମୟ'—ଯେଉଁ ଅବାରିତ ଭାବୋଚ୍ଛ୍ୱାସକୁ ରୂପ ଦେଇଛି ତାହାର ଉତ୍ସ ଏକ ପ୍ରାଣମୟ ଆନନ୍ଦ;—ଦାରିଦ୍ର୍ୟରୁ ଏଭଳି ଶକ୍ତିର ଉଦ୍‌ଭବ କଳ୍ପନା ମନଃପୂତ ହୁଏ ନାହିଁ । ବରଂ ଏକ ସାଧୁ ଅନ୍ତରର ଆତ୍ମୋପଲବ୍ଧି ଏହାର କାରଣ ହୋଇଥିବା ସମ୍ଭବ । 'ଏଭରେଷ୍ଟ' 'ପ୍ରଧାନପାଟ' ପ୍ରଭୃତି ଛଅଟି ସନେଟ୍ ବା ଚତୁର୍ଦ୍ଦଶ ପାଦୀ କବିତା ମଧ୍ୟ ଅଛି—ଛନ୍ଦ ପ୍ରତି ଧାଡ଼ି ପଂକ୍ତିର ଏକାନ୍ତର ମିତ୍ରାକ୍ଷର ଏବଂ ଶେଷ ଦୁଇ ପଂକ୍ତିର ମିତ୍ରାକ୍ଷର ।

ଶୋକ କବିତା ଅନ୍ୟ ଏକ ବିଭାଗ । ଅନ୍ୟାନ୍ୟ କବିତା ଗୁଡ଼ିକ ପାରଂପରିକ ଛନ୍ଦରେ ରଚିତ ତଥ୍ୟ, ନୀତି ବା ବସ୍ତୁନିଷ୍ଠ କବିତା । ଅମିତ୍ରାକ୍ଷର ଛନ୍ଦରେ ରଚିତ ହୋଇଛି ଗୋଟିଏ କବିତା 'ବ୍ରହ୍ମାଙ୍କ ହାଃ ବାତୁଡ଼ା' । କାବ୍ୟ ଶିଳ୍ପ ଦୃଷ୍ଟିରୁ ଏ ଗୁଡ଼ିକରେ କଳ୍ପନାର ବିକାଶ ପ୍ରାପ୍ତ ନାହିଁ । ଜୀବନର ନିବିଡ଼ତମ ଅନୁଭୂତିକୁ ପ୍ରକାଶ କରାଯାଇଛି (କ) ପ୍ରତ୍ୟକ୍ଷ କଥନ ଭଙ୍ଗୀରେ, (ଖ) ରୂପକ ଶୈଳୀରେ ଅଥବା (ଗ) ବ୍ୟଙ୍ଗ ଓ ଆକ୍ଷେପୋକ୍ତି ମାଧ୍ୟମରେ । ରୂପକ ତଥା ଆକ୍ଷେପୋକ୍ତି ପ୍ରୟୋଗରେ ଗଙ୍ଗାଧରଙ୍କ ଗୀତ-କବିତାର ଦିଗ୍ଦର୍ଶନ ସ୍ୱୀକୃତ । 'ଉତ୍କଳ ଭାରତୀଙ୍କ ଉକ୍ତି', 'ତାଙ୍କୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର' ଓ 'ଗଣେଶଙ୍କ ଆତ୍ମକଥା' ପ୍ରଭୃତି କବିତାଗୁଡ଼ିକୁ ଦୃଷ୍ଟାନ୍ତ କୋଟୀରେ ନିଆଯାଇପାରେ । ଗଙ୍ଗାଧରଙ୍କ ରଚନାର ବହୁ ସୂକ୍ତି ସୁବଚନର ଗନ୍ତାଘର ଏ କବିତା ଗୁଡ଼ିକ । "ଚେତନ ଯେନିବ ଯେତେକ ଅଛି ମୋ ହୃଦେ ରୁମ୍ଭ ପ୍ରତି ଭକ୍ତି", "ଯାହା ପରସାଦ ତାଙ୍କୁ ଅରପିଲେ ହେବ ସିନା ପରମାଦ", "ମୁଁ ତ ଅମୃତ ସାଗର ବିନ୍ଦୁ", "ହିତ ହେବା ପାଇଁ କର ଯେବେ ଆଶା/ହିତକର ଆଗେ ନିଜ ମାତୃଭାଷା", "ମାତୃଭୂମି ମାତୃଭାଷାରେ ମମତା ଯା ହୃଦେ ଜନମି ନାହିଁ/ତାଙ୍କୁ ଯଦି ଜ୍ଞାନୀ-ଗଣରେ ଗଣିବା ଅଜ୍ଞାନ ରହିବେ କାହିଁ", "ମାତା ନେଇଛେ ଦଗ୍ଧମୁଖୀ ଚନ୍ଦ୍ରବଦନା"—ସେ ମଧ୍ୟରୁ କେତୋଟି ଦୃଷ୍ଟାନ୍ତ ।

## 'କୃଷକ ସଙ୍ଗୀତ' : କୃଷକ ସହାୟକ କାର୍ଯ୍ୟକ୍ରମ

୧୯୦୧ରେ ପ୍ରକାଶିତ 'କୃଷକ ସଙ୍ଗୀତ'କୁ କବିତା ପରିବର୍ତ୍ତେ ସଙ୍ଗୀତ ଆଖ୍ୟା ଦେବା ହିଁ ସମୀଚୀନ । କୃଷକମାନେ ବିବିଧ ଫସଲ ଚାଷ କଲାବେଳେ 'ଫସଲ'ର ଗୁଣଧର୍ମ ସୂଚକ ଏହି ଛନ୍ଦୋବଦ୍ଧ ରଚନା ସଙ୍ଗୀତ ସ୍ୱରରେ ଗାନ କରିବା ଦ୍ୱାରା ଏକ ସହାୟକ କର୍ମସଙ୍ଗୀତରୁ ପ୍ରେରଣା ପାଇବେ ତଥା ଫସଲ ସଂକ୍ରାନ୍ତ ମୁଖ୍ୟ ଜ୍ଞାତବ୍ୟ ବିଷୟ ତାଙ୍କ ସ୍ମରଣରେ ରହିଯିବ । ଗଙ୍ଗାଧର ତାଙ୍କର ଏ ଉଦ୍ଦେଶ୍ୟ ତାଙ୍କ ଉତ୍ସର୍ଗ ପତ୍ର ଓ ଭୂମିକାରେ ଅତି ସ୍ପଷ୍ଟ ଭାବେ ଜଣାଇ ଦେଇଛନ୍ତି । ବୋଡ଼ାସମ୍ବର ଜମିଦାର ରାଜା ବାହାଦୂର ରାଜେନ୍ଦ୍ର ସିଂହ ବରିହାଙ୍କ ନିର୍ଦ୍ଦେଶ-ଉପଦେଶକୁ ଗଙ୍ଗାଧର ଏହିପରି ଭାବେ କାର୍ଯ୍ୟକାରୀ କରିଛନ୍ତି । ଲୋକଗୀତର ସାଧାରଣ ଛନ୍ଦରେ ଗାନକଲେ ଏଗୁଡ଼ିକର ମାଧୁରୀ ଜଣାପଡେ ।

## 'ଭାରତୀ ଭାବନା' : ଶେଷ କବିତା : ଦେଶ ଭାବନା

୧୯୨୩ରେ ପ୍ରକାଶିତ ମାତ୍ର ୧୭ ପଦ ବିଶିଷ୍ଟ ଖଣ୍ଡ କାବ୍ୟ 'ଭାରତୀ ଭାବନା' ଗଙ୍ଗାଧରଙ୍କ ଲେଖନୀର ଶେଷ ଅବଦାନ; କଲ୍ୟାଣ-ଅଭିଳାଷ ବୃତ୍ତରେ ଏବଂ ସମ୍ପୂର୍ଣ୍ଣ ଉକ୍ତୀୟ ଶୈଳୀରେ ଦ୍ୱ୍ୟର୍ଥବୋଧକ ଶ୍ଳେଷାଳଂକାରରେ ଲେଖା । ଭାରତରେ ୧୯୨୦ରୁ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଯେଉଁ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହୋଇଥିଲା, ସମ୍ବଲପୁରରେ ତାହା ଲୋକମନକୁ ଖୁବ୍ ପ୍ରଭାବିତ କରିଥିଲା । ବରପାଲିରେ ମଧ୍ୟ ସେହି ପ୍ରଥମ ଅବସ୍ଥାରୁ ଭାଗୀରଥି ପଟ୍ଟନାୟକ ପ୍ରମୁଖ ଏହି ସଂଗ୍ରାମରେ ଝାସ ଦେଇଥିଲେ । ସେତେବେଳେ ପ୍ରାୟ ଷାଠିଏ ବର୍ଷ ବୟସରେ ଗଙ୍ଗାଧରଙ୍କ ସ୍ୱାଧୀନ ଚେତନା ଯଥେଷ୍ଟ ଆନ୍ଦୋଳିତ ହୋଇ ନଥିଲେ ଏହି କବିତା ରଚିତ ହୋଇ ନଥାନ୍ତା । କବିତାଟି ଭାରତ ମହିଳାଙ୍କ ଉକ୍ତି ଭାବରେ କଳ୍ପିତ । ମଥୁରାରୁ ଆଗତ କୃଷ୍ଣ କିଶୋରୀ ଗୋପୀଙ୍କ ଜୀବନକୁ ଯେପରି ଭ୍ରଷ୍ଟ କରିଥିଲେ, ସେହି ଘଟଣାକୁ ରୂପକ ଭାବେ ଗ୍ରହଣ କରି ଭାରତୀୟଙ୍କ ଜୀବନରେ ଇଂରେଜଙ୍କ ଅତ୍ୟାଚାର ତଥା ଆର୍ଥିକ ସାଂସ୍କୃତିକ ସକଳ ଦିଗରୁ ଭାରତୀୟଙ୍କୁ ଅନ୍ତଃସାର ଶୂନ୍ୟ କରି ସେମାନଙ୍କ ଜାତି କୁଳ ଧ୍ୱଂସ କରିବାର କାହାଣୀ ବର୍ଣ୍ଣିତ ହୋଇଛି । ଗୋଟିଏ ଉଦାହରଣରୁ ସ୍ପଷ୍ଟ ହେବ :

"ତୁମ୍ଭର ଆଗରେ ତୁମ୍ଭର ପରାସ୍ତେ
ମୁଷଳମାନ ଥିଲେ ଆସି
କୋପନ ସ୍ୱଭାବ ହେଲେ ହେଁ ଆମ୍ଭର
ସକଳ ଥିଲେ ନାହିଁ ଗ୍ରାସି;
ତରସେ, ନ ଥିଲେ ବସନ ହରଣ
ଦୁରପଦ ସୁତା ଚିନ୍ତାକାର ପାଣ
କରି ନଥିଲେ ସେ ପ୍ରେରଣ ।"

(କୃଷ୍ଣଙ୍କ ପକ୍ଷେ)—ହେ କୃଷ୍ଣ ! ତୁମ୍ଭ ଆଗରୁ ତୁମ୍ଭର ବଡ଼ ଭାଇ (ମୁଷଳମାନ୍) ମୁଷଳୀ, ବଳରାମ ଆସିଥିଲେ । ସେ ବଡ଼ ରାଗୀ । କିନ୍ତୁ ସେ ଆମର ସବୁକଥା ଏପରିକି ପିନ୍ଧିବା ଲୁଗା ପର୍ଯ୍ୟନ୍ତ ତ ହରଣ କରି ନଥିଲେ; ତୁମ୍ଭେ ବସ୍ତ୍ରହରଣ କଲ ଏବଂ ଶେଷରେ (ଦୁରପଦ, ଦ୍ରୁପଦ) ଦ୍ରୁପଦସୁତା ଦ୍ରୌପଦୀ ତୁମକୁ ଚିନ୍ତା କରିବାରେ ତୁମେ ତା ପାଖକୁ ଆମର ଲୁଗାତକ ପ୍ରେରଣ କରିଥିଲ । (ଇଂରେଜଙ୍କ ପକ୍ଷେ)—

ତୁମ୍ଭ ଅଗରୁ କ୍ରୋଧୀ ପ୍ରକୃତିର ମୁସଲ୍‌ମାନ୍ (ପଠାଣ) ଶାସକ ଆସିଥିଲେ । ସେମାନେ ସବୁ ନେଇ ନଥିଲେ । ତନ୍ତୁଶିଳ୍ପ ନଷ୍ଟ କରି ନଥିଲେ । ତୁଇପରି, (ଗ୍ଲ ନ—ମାଞ୍ଚେଷ୍ଟର ପ୍ରଭୃତି)ରେ ଥିବା ସୂତା (ବସ୍ତ୍ରଶିଳ୍ପକୁ) ମନରେ ରଖି (କାରପାଶ), କାର୍ପାସ ସବୁ ଏ ଦେଶରୁ ପ୍ରେରଣ କରି ଏ ଦେଶର ବସ୍ତ୍ର-ଶିଳ୍ପ ତୁମ୍ଭେ ଧ୍ୱଂସ କଲ ।

ଏହିପରି ଅନ୍ୟପଦ ଗୁଚ୍ଛରେ ମଧ୍ୟ ଦ୍ୱ୍ୟର୍ଥବୋଧକ ପଦପ୍ରୟୋଗ ଯୋଗୁଁ ଇଂରେଜ ଶାସନରେ ଭାରତୀୟଙ୍କ ଦୁର୍ଦ୍ଦଶା ଲୋକେ ଜାଣିଥିବା ପୁରାଣ କାହାଣୀର ରୂପକ ମାଧ୍ୟମରେ କବି ଅତ୍ୟନ୍ତ ନିପୁଣ ଭାବେ ବର୍ଣ୍ଣନା କରିଅଛନ୍ତି । କପରି ଆମର ଜାତିକୁଳ ଗଲା, ଭାଷା ଗଲା, ବଂଶ ଧାରଣ ପର୍ଯ୍ୟନ୍ତ ବଦଳିଲା, ତାଙ୍କ ବେଶ-ବେଶ ସବୁ ଭଲ ଲାଗିଲା, ଆମ ଖାଇବା ଜିନିଷ ବଦଳରେ ତାଙ୍କ ଖାଇବା ଜିନିଷ କୁକ୍କୁଟ ମାଂସ ହେଲା ଶ୍ରେଷ୍ଠ, କଳାଗୋରା ଭେଦ ଆସିଲା ଇତ୍ୟାଦି ପ୍ରତ୍ୟେକ କଥାରେ ଇଂରେଜ ଯାହାକଲେ ତାହା ହେଲା ଏ ଦେଶର ଅନୁକରଣୀୟ ଆଦର୍ଶ; —ସ୍ଥୂଳତଃ ଗୋଟାଏ ବିଶାଳ ଭାରତୀୟ ଜାତି ଇଂରେଜ କୌଶଳର ଶିକାର ହୋଇ ନିଜ ସଂସ୍କୃତି ଓ ପରଂପରା ଭୁଲି ନିଃସ୍ୱ ହୋଇ ସେମାନଙ୍କ ଅନୁଗ୍ରହ ପ୍ରାର୍ଥୀ ଦାସରେ ପରିଣତ ହେଲା । କହିବା ବାହୁଲ୍ୟ, ଏ କବିତାରେ କବିଙ୍କ ବକ୍ତବ୍ୟ ଲୋକମନକୁ ଖୁବ୍ ପ୍ରଭାବିତ କରିଥିଲା । ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ତାଙ୍କ 'କବିଲିପି' (୧୯୫୭) ପୁସ୍ତକର ୧୬୮ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି ଯେ ଏ ପୁସ୍ତକର ବିରୋଧୀ ପ୍ରଭାବ ଯୋଗୁଁ ଏହା ସେତେବେଳେ ଭାରତ ସରକାର ବାଜ୍ୟାପ୍ତ କରି ଏହାର ପ୍ରଚାର ନିଷିଦ୍ଧ କରିଥିଲେ ।

ଏ କବିତାର ଶୈଳୀ ଓ ଛନ୍ଦ ସମସ୍ତ କ୍ଷି ଗଙ୍ଗାଧରଙ୍କ କବିତ୍ୱର ଅରୁଣୋଦୟର ସେହି ଭକ୍ତିମାର୍ଗୀ ପ୍ରାଚୀନ ଧାରାର ଆଲେଖ୍ୟ ବହନ କରିଛି । କିନ୍ତୁ ଏହାର ଭାବଧାରାର ଆଧୁନିକତା ଏହାକୁ ଆଧୁନିକ ଜାତୀୟତାବୋଧର ପ୍ରଚ-ତ୍ତ୍ୱାଚ୍ଛ୍ୟ ଦେଇଛି । ଭାବ ନିକଟରେ ଛନ୍ଦ ଓ କବି-ରୀତିର ପ୍ରଭାବ କେତେ ଗୌଣ 'ଭାରତୀ ଭାବନା' ତାହାର ଏକ ଜ୍ୱଳନ୍ତ ପ୍ରମାଣ ।

ଏ କବିତା ପ୍ରକାଶିତ ହେବାର ପ୍ରାୟ ଏକ ବର୍ଷ ମଧ୍ୟରେ ୧୯୧୪ ଏପ୍ରିଲ ୪ ତାରିଖ ଚୈତ୍ର ଅମାବାସ୍ୟା ଦିନ ମହାକବି ଗଙ୍ଗାଧରଙ୍କ ଦେହାନ୍ତ ହେବା ସହିତ ତାଙ୍କର ସେ ଅମର ଲେଖନୀ ଚିରକାଳ ପାଇଁ ନୀରବ ହୋଇଗଲା ।

ଗଙ୍ଗାଧରଙ୍କ ଜୀବନର ଏହି ଉତ୍ତର-ପର୍ବ ଦେଉଛି ତାଙ୍କ ଅମର ଯଶର ଝଲକ । ଚିର ଅଧ୍ୟୟନଶୀଳ ସାଧକ ଗଙ୍ଗାଧର ଶାସ୍ତ୍ର ପୁରାଣରୁ ସଂଗ୍ରହ କରୁଥିଲେ ଜ୍ଞାନରାଜି; ତାହା ସହିତ ପରିଣତ ଜୀବନର ପରିପକ୍ୱ ଅନୁଭୂତି ମିଶି ତାଙ୍କ ପ୍ରତିଭାର ନିପୁଣ ସୃଜନ-ଶୀଳତା ତଥା ଲୋକ-ଚରିତ୍ରର ଅବବୋଧ ପରିମାର୍ଜିତ ହେଉଥିଲା । କବିର ଏହି ମାନସ-ସମୃଦ୍ଧି ଦେଇଥିଲା ତାଙ୍କ କାବ୍ୟ କବିତାର ଆତ୍ମିକ ମୌଳିକ-ଭିତ୍ତି ତଥା ଆଙ୍ଗିକ ବିକାଶର ଉପାଦାନ । ତେଣୁ ଗଙ୍ଗାଧରଙ୍କ କବିଜୀବନରେ ଦେଖାଯାଏ ଏକ ଉତ୍ତରଣ ଓ ବୌଦ୍ଧିକ ବିକାଶର କ୍ରମ ପରିଣାମ । ବୟସ ଯେତେ ବଢ଼ିଛି କାବ୍ୟର ମାର୍ଜନା ତଥା ପ୍ରକାଶ ଯେତେ ଅଧିକ ସ୍ନିଗ୍ଧ, ସେତେ ଅଧିକ ପ୍ରାଣସ୍ପର୍ଶୀ ହୋଇଛି । ରାଧାନାଥ ସମେତ ତାଙ୍କ ସମସାମୟିକ ସବୁ ମୁଖ୍ୟ କବିଙ୍କ ତୁଳନାରେ ତାଙ୍କ ପ୍ରତିଭାର ଏହି ବିଲକ୍ଷଣ ବିକାଶ ତାଙ୍କ ମହତ୍ତ୍ୱର ଅପର ଦିଗ । ତେଣୁ ତାଙ୍କ ଉତ୍ତର-ଜୀବନରେ କାବ୍ୟରେ ସ୍ୱତନ୍ତ୍ର ବାଣୀ ଓ ଚମକର ବୈଶିଷ୍ଟ୍ୟ ମଧ୍ୟ ଲକ୍ଷଣୀୟ ହୋଇ ଉଠିଛି । ସେଥିଯୋଗୁଁ ଏହି ଉତ୍ତର-ପର୍ବକୁ 'ପ୍ରତିଷ୍ଠା ପର୍ବ' ନାମିତ କରିବାରେ ଅନେକଙ୍କ ସମର୍ଥନ ଲଭିବ ଆଶା ଅବାସ୍ତବ ନୋହିପାରେ ।

## ଗଙ୍ଗାଧରଙ୍କ ଗଦ୍ୟ ରଚନାବଳୀ :

ଗଙ୍ଗାଧର ମେହେରଙ୍କୁ ଆମ୍ଭେମାନେ କବି ଭାବରେ ହିଁ ଜାଣିଛୁଁ । କିନ୍ତୁ ତାଙ୍କର ସମସାମୟିକ କାଳରେ ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଥିବା ତାଙ୍କର କେତୋଟି ଗଦ୍ୟ ରଚନା ମଧ୍ୟ ସଂଗୃହୀତ ହୋଇ ଗ୍ରନ୍ଥାବଳୀରେ ସନ୍ନିବେଶିତ ହୋଇଛି । ପରବର୍ତ୍ତୀ କାଳରେ ଅନ୍ୟ କେତୋଟି ଗଦ୍ୟ ରଚନା ଆବିଷ୍କୃତ ହୋଇ ଭଗବାନ ମେହେରଙ୍କ 'ପିତୃ ପ୍ରସଙ୍ଗ'ରେ ପ୍ରକାଶିତ ହୋଇଛି । ଏ ମଧ୍ୟରୁ କବିଙ୍କ ସଂକ୍ଷିପ୍ତ ଆତ୍ମଜୀବନୀ ବ୍ୟତୀତ ଶ୍ରୀ ନୃପରାଜସିଂହ ଏବଂ କାଶୀନାଥ ପଣ୍ଡାଙ୍କ ଜୀବନୀ ଉପରେ ଦୁଇଟି ପ୍ରବନ୍ଧ ଅଛି । ଆଶା ଓ ନୈରାଶ୍ୟର ସଂଳାପ ଶୈଳୀରେ 'ପୁରାଣ କବି ଫକୀର ମୋହନ'ଙ୍କ ଜୀବନ ଚରିତର ସମୀକ୍ଷା ଅଛି । ଏହାଛଡ଼ା ସେ 'ଏହା କି ପୃଥିବୀର ଶବ୍ଦ' ଏବଂ 'ଶିକ୍ଷିତ, ଅଶିକ୍ଷିତ ଓ ଶିକ୍ଷାଭିମାନୀ' ଶୀର୍ଷକ ଦୁଇଟି ସାଧାରଣ ପ୍ରବନ୍ଧ ରଚନା କରିଥିଲେ ଏବଂ 'ବ ଭେଦ' ଓ 'ର ଡ଼ ଭେଦ' ଶୀର୍ଷକ ଦୁଇଟି ଓଡ଼ିଆ ଉଚ୍ଚାରଣ ସମ୍ପର୍କିତ ଗଦ୍ୟ ମଧ୍ୟ ପ୍ରକାଶ କରିଥିଲେ । ଏ ପ୍ରବନ୍ଧ ଗୁଡ଼ିକ ଛଡ଼ା ତାଙ୍କର ପ୍ରାୟ ଶତାଧିକ ଚିଠିପତ୍ର ସଙ୍କଳିତ ହୋଇ 'ପିତୃ-ପ୍ରସଙ୍ଗ', 'ଗଙ୍ଗାଧର ପତ୍ରାବଳୀ' ଏବଂ 'ପତ୍ରଭାରତୀ' ପୁସ୍ତକମାନଙ୍କରେ ଅନ୍ତର୍ଭୁକ୍ତ

ହୋଇଛି । ଶେଷରେ ତାଙ୍କର ପ୍ରାୟ ପ୍ରତ୍ୟେକଟି କାବ୍ୟର ଭୂମିକା ତଥା ଉତ୍ସର୍ଗୀପତ୍ର ମଧ୍ୟ ଗଦ୍ୟାକାରରେ ରଚିତ ।

ଏ ଗଦ୍ୟ ଗୁଡ଼ିକର ଭାଷାରେ ଗ୍ରାମ୍ୟତା ନାହିଁ । ଶିଷ୍ଟଜନୋଚିତ ଷ୍ଟାଣ୍ଡାର୍ଡ ଓଡ଼ିଆ ଭାଷା । ପରିଚ୍ଛନ୍ନ, ଗାମ୍ଭୀର୍ଯ୍ୟବନ୍ତ ପଦପ୍ରୟୋଗ ଶୈଳୀ । କାବ୍ୟଭୂମିକା ଭାବରେ କାବ୍ୟର ସଂକ୍ଷିପ୍ତ ପ୍ରତିପାଦ୍ୟ ବା ସମୀକ୍ଷା ବଡ଼ ମନୋଜ୍ଞ ହୋଇଛି । ଉତ୍ସର୍ଗ ପତ୍ର ଗୁଡ଼ିକରେ ଗୁଣୀର ବନ୍ଦନା ଓ ଦାନର ସ୍ୱୀକୃତି ସଙ୍ଗେ କବିର ବିନୀତ ସ୍ୱାଭିମାନର ସ୍ୱର ସ୍ପଷ୍ଟ । ସେହିପରି ଅନେକ ପତ୍ରରେ ବନ୍ଧୁଭାବରେ ତାଙ୍କର ଅକୃତ୍ରିମତା ପ୍ରକାଶ ପାଇଛି । ବ୍ରଜମୋହନ ପଣ୍ଡାଙ୍କ ପାଖକୁ ତାଙ୍କର ପତ୍ରାବଳୀ ମଧ୍ୟରେ ତାଙ୍କ ଉତ୍ତର-ଜୀବନର କାବ୍ୟଗୁଡ଼ିକର ଯୋଜନା ଏବଂ ରଚନାର କ୍ରମଗତି ସମ୍ବନ୍ଧୀୟ ଉଲ୍ଲେଖରୁ ତାଙ୍କ କବିମାନସର କ୍ରିୟା ତଥା ରଚନାର ଇତିହାସ ଜଣାପଡ଼େ । ମୂଳତଃ ଏ ଗଦ୍ୟର ଶୈଳୀ, ପ୍ରକାଶଭଙ୍ଗୀ ଓ ଉପଜୀବ୍ୟ ସବୁ ଆମ ଭାଷାରେ ଏକ ପ୍ରକାର ଦୃଷ୍ଟାନ୍ତସ୍ଥାନୀୟ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।



## ପଞ୍ଚମ ପରିଚ୍ଛେଦ

# ଗଙ୍ଗାଧର ସାହିତ୍ୟର ନିଷ୍କର୍ଷ : କେତୋଟି ବିଭାବ

### (୧) ସ୍ୱଭାବ କବି : ଜୀବନ କାବ୍ୟ

ଗଙ୍ଗାଧରଙ୍କୁ 'ସ୍ୱଭାବ କବି' ଆଖ୍ୟା ଦେବାରେ ପଣ୍ଡିତ ଗୋପୀନାଥ ମିଶ୍ରଙ୍କ ଶ୍ରଦ୍ଧା ହିଁ କାରଣ । ପଣ୍ଡିତଜୀ ସ୍ୱୟଂ ଜଣେ କୃଷ୍ଣଭକ୍ତ-ପରାୟଣ ସାଧୁଜନ ଥିଲେ ଏବଂ ଭକ୍ତି ଉପରେ ଆଧାରିତ କେତୋଟି କବିତା ପୁସ୍ତିକା ମଧ୍ୟ ରଚନା କରିଥିଲେ । ଗଙ୍ଗାଧରଙ୍କ ଜୀବନର ଅପରାହ୍ଣରେ ବରପାଲି ସ୍କୁଲରେ ଶିକ୍ଷକତା କରିବାକୁ ଆସି ପଣ୍ଡିତଜୀ କବିଙ୍କ ସହ ବନ୍ଧୁତା ସୂତ୍ରରେ ଆବଦ୍ଧ ହୁଅନ୍ତି ଏବଂ କବିଙ୍କ ସାହିତ୍ୟିକ ପ୍ରତିଭାର ଜଣେ ମୁଗ୍ଧ ଗ୍ରାହକ ହୋଇ ଉଠନ୍ତି । ୧୯୫୧ରେ ଗ୍ରନ୍ଥାବଳୀ ପ୍ରଥମ ସଂସ୍କରଣ ମୁଦ୍ରଣ କାଳରେ ସେ ଗଙ୍ଗାଧରଙ୍କର ଯେଉଁ ଜୀବନ ଚରିତ ଲେଖିଥିଲେ ତହିଁରେ ସ୍ୱଭାବ କବି ପ୍ରୟୋଗ ଅଛି । ସମ୍ଭବତଃ, ଏହାର ଏକ ସରଳ ଅର୍ଥ ହେଲା ଯେ ସ୍ୱଳ୍ପ ଶିକ୍ଷିତ ଏବଂ ଦରିଦ୍ର ତଥା ଜଞ୍ଜାଳଗ୍ରସ୍ତ ହୋଇ-ଥିଲେ ହେଁ କବି ଏକ ନୈସର୍ଗିକ କବିଶକ୍ତିର ଅଧିକାରୀ ହୋଇଥିବାରୁ ତାଙ୍କର ମନୋଜ୍ଞ କବିତା ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ । ଗଙ୍ଗାଧରଙ୍କ ଆନୁଷ୍ଠାନିକ ଶିକ୍ଷା ଖୁବ୍ ସ୍ୱଳ୍ପ ଥିଲା ଏହା ସତ୍ୟ; ସେହିପରି ସତ୍ୟ ହେଉଛି ଯେ ସେ ଅସାମାନ୍ୟ ପ୍ରତିଭାର ଅଧିକାରୀ ଥିଲେ । କିନ୍ତୁ ସେ ପ୍ରତିଭାକୁ ସଙ୍କୁଚିତ କରିବା ନିମିତ୍ତ ଲୋଡ଼ା ଯେଉଁ ଜ୍ଞାନ ଓ ଅନୁଭୂତିର ସାଧନ ତାହାର ଅଭାବକୁ ସ୍ୱୀକାର କରିନେବା ଆଦୌ ଯୁକ୍ତିସିଦ୍ଧ ନୁହେଁ । ସେଥିପାଇଁ ତାଙ୍କ ଅଣ-ଆନୁଷ୍ଠାନିକ ଶିକ୍ଷା ପ୍ରତି ଧ୍ୟାନଦେବା ଆବଶ୍ୟକ । ଏ ମଧ୍ୟରେ ଗଙ୍ଗାଧର-ସାହିତ୍ୟର ଅଧ୍ୟୟନ ତଥା ସମାଲୋଚନା ଯେତେ ବ୍ୟାପକ ହୋଇଛି, କ୍ରମେ ଦେଖିବାକୁ ମିଳୁଛି ଯେ ଗଙ୍ଗାଧର ବେଶ୍ ଅଧ୍ୟୟନଶୀଳ ଥିଲେ ଏବଂ ଭାରତୀୟ ପୁରାଣ ସାହିତ୍ୟ, ସଂସ୍କୃତ ଓ ପ୍ରାଚୀନ ଓଡ଼ିଆ କାବ୍ୟ ସାହିତ୍ୟ, ରାଧାନାଥ ଓ ସମସାମୟିକ ସାହିତ୍ୟିକଙ୍କ ରଚନାବଳୀ, କେତେକ ହିନ୍ଦୀ ଓ ବଙ୍ଗଳା ଲେଖା ଏବଂ ପ୍ରାପ୍ୟ ସବୁ ପତ୍ରପତ୍ରିକାର ଆଲୋଚନା ପାଠ କରୁଥିଲେ ଏବଂ ଆବଶ୍ୟକତା ମତେ ନିଜ ପ୍ରତିକ୍ରିୟା ପ୍ରକାଶ କରୁଥିଲେ ।

ତାଙ୍କ ଜୀବନୀ ଏ ବିଷୟରେ ବିଶେଷ ଆଲୋକପାତ କରେନାହିଁ । କିନ୍ତୁ ତାଙ୍କ କାବ୍ୟ-କବିତାମାନଙ୍କରେ ଏହାର ବିପୁଳ ଦୃଷ୍ଟାନ୍ତ ରହିଛି । ଅତଏବ ଆଜି ସ୍ୱଚ୍ଛମନରେ ସ୍ୱୀକାର କରିନେବା ଉଚିତ ଯେ ଗଙ୍ଗାଧର ଜଣେ ବହୁପାଠୀ ପଣ୍ଡିତ ଥିଲେ ।

ତାଙ୍କ ଦାରିଦ୍ର୍ୟ ପ୍ରସଙ୍ଗ ମଧ୍ୟ ଆଜି ସେହିପରି ପୁନର୍ବିନ୍ୟସ୍ତ ହେବା ଆବଶ୍ୟକ । ସେ ଦରିଦ୍ର ପିତାର ସନ୍ତାନ ଥିବାରୁ ସମୁଚିତ ଆନୁଷ୍ଠାନିକ ଶିକ୍ଷାରୁ ବଞ୍ଚିତ ହୋଇଥିଲେ ଏବଂ ପିତାଙ୍କ ଅଭିଭାବକତ୍ୱରେ ଥିବା ବେଳେ ତାଙ୍କର ଆର୍ଥିକ ଅବସ୍ଥା ଟାଣଟଣା ଥିଲା । କିନ୍ତୁ ସେ ନିଜେ କର୍ମଜୀବନ ଆରମ୍ଭ କଲାପରେ ତାଙ୍କର ଅବସ୍ଥା ବଦଳିଛି ଏବଂ କବିଜୀବନ ଆରମ୍ଭରେ ସେ ସାଧାରଣ ନିମ୍ନ ମଧ୍ୟବିତ୍ତ ଭଦ୍ରବ୍ୟକ୍ତି ଥିଲେ । ଏ ଅବସ୍ଥାର କ୍ରମୋନ୍ନତି ଗଙ୍ଗାଧରଙ୍କ ସ୍ୱନିଷ୍ଠ ଉଦ୍ୟମର ଫଳ । ୧୯୧୭ରେ ଅବସର ନେବା ବେଳେ ତାଙ୍କ ଅବସ୍ଥାକୁ ମଧ୍ୟବିତ୍ତ କହିବା ହିଁ ସଙ୍ଗତ ।

ତେଣୁ "ସ୍ୱଭାବତଃ କବି" 'ସ୍ୱଭାବ କବି' ଏଭଳି ଅର୍ଥର ସହାୟକ ଯେଉଁ ଦୁଇଟି ଯୁକ୍ତି ଥିଲା ଦାରିଦ୍ର୍ୟ ଓ ଅଳ୍ପଶିକ୍ଷା ତାହା ଆଉ ଗ୍ରହଣୀୟ ହେଉନାହିଁ । କହିବା ବାହୁଲ୍ୟ ଜଣେ ଚିର ଉଦ୍ୟମଶୀଳ ସ୍ୱାଭିମାନୀ ସାଧକଙ୍କ ପାଇଁ ଏହା ଏକ ମର୍ଯ୍ୟାଦା-ହାନିକର ପ୍ରସ୍ତାବ । ତେଣୁ ଏଭଳି ଅର୍ଥ ଏକାନ୍ତ ଭାବେ ପରିହାର୍ଯ୍ୟ ।

ତଥାପି 'ସ୍ୱଭାବ କବି' ପ୍ରୟୋଗଟି ଲୋକଚିତ୍ତର ଆଦର ସମର୍ଥନ ହୋଇ ସାରିଛି । ତାଙ୍କ କାବ୍ୟର ବିଶେଷତ୍ୱ ଦୃଷ୍ଟିରୁ ଏହାର ଅଭିନବ ଅର୍ଥାନ୍ତର ସମ୍ଭବ । (୧) 'ସ୍ୱ-ଭାବ' ଅର୍ଥାତ୍ ନିଜର ମୌଳିକ ଭାବକୁ ନେଇ ସେ କବିତା ରଚନା କରିଛନ୍ତି କହିଲେ ଅବଶ୍ୟ ସଙ୍ଗତ ହେବ । ଏ ଦୃଷ୍ଟିରୁ 'ଇନ୍ଦୁମତୀ' ଓ 'ପ୍ରଣୟ ବଲ୍ଲରୀ' କାବ୍ୟ ଦ୍ୱୟ ଛାଡ଼ିଦେଲେ ତାଙ୍କ ସକଳ କାବ୍ୟ, କ୍ଷୁଦ୍ର କବିତା ଅଥବା ଗଦ୍ୟ ରଚନା କୌଣସିଟିରେ ଗଙ୍ଗାଧର କାହାରି ଅବଲମ୍ବନରେ ଗଢ଼ି କରିନାହାନ୍ତି । ଏପରିକି 'ପ୍ରଣୟ-ବଲ୍ଲରୀ' କାବ୍ୟର ଗ୍ରନ୍ଥନରେ କବି 'ଶକୁନ୍ତଳା' ନାଟକର ପ୍ରାୟ ଅର୍ଦ୍ଧେକ ଅଂଶ ପ୍ରତ୍ୟାଖ୍ୟାନ କରି ସଂପୂର୍ଣ୍ଣ ଅଭିନବ ସଂଯୋଜନ ମଧ୍ୟରେ ନାଟକୀୟ ଆଖ୍ୟାନ ବସ୍ତୁର ସୂତ୍ର ରକ୍ଷା କରିବା ସଙ୍ଗେ ସଙ୍ଗେ ଶକୁନ୍ତଳା ଚରିତ୍ରକୁ ଏକ 'ପ୍ରଣୟ ବିମୁଗ୍ଧା ଉତ୍କଳ ଲଳନା' କରିବାରେ ଯେଉଁ ନୈପୁଣ୍ୟ ପ୍ରଦର୍ଶନ କରିଛନ୍ତି, ତାହା ସେହି କାବ୍ୟକୁ ଏକ ଅଭିନବ ମୌଳିକ କାବ୍ୟର

ଗୌରବ ଦେଇଛୁ । ତେଣୁ ଗଙ୍ଗାଧରଙ୍କ ସମଗ୍ର ସାହିତ୍ୟ ସୃଷ୍ଟି ତାଙ୍କର ଏକ ମୌଳିକ ରାଜ୍ୟ । ନିଜର ମୌଳିକ ଭାବର ସ୍ୱଚ୍ଛନ୍ଦ ବିଳାସ ମଧ୍ୟରେ ସେ ହେବେ 'ସ୍ୱଭାବ କବି' (୨) ଦ୍ୱିତୀୟତଃ, ଗଙ୍ଗାଧରଙ୍କ ନିଜ 'ଭାବ'ରେ ଥିବା ଯେଉଁ ଗୁଣଗ୍ରାହିକ ମହତ୍ତ୍ୱ ତାହାର ଅନୁରୂପ ହୋଇଛି ତାଙ୍କର ସମସ୍ତ କାବ୍ୟ କବିତା । ଏକ ସ୍ଥିର ନିର୍ଦ୍ଦିଷ୍ଟ ଆଭିମୁଖ୍ୟ—ଯାହା ଲେଖା ହେବ ତାହା ହେବ ନୀତିପୂତ, ଆଦର୍ଶ ସମ୍ବଳିତ, ଦେଶ ଓ ଦଶର ମଙ୍ଗଳ ଉଦ୍ଦେଶ୍ୟରେ ନିସ୍ପନ୍ଦିତ । 'ଭାବ' କହିଲେ ବୁଝାଏ ଯେଉଁ ଦାର୍ଶନିକ ସ୍ଥିତିକୁ, ତାହି ର ଭିତ୍ତି ଓ ପ୍ରକାଶଭୂମି ହେଉଛି ଆଦର୍ଶ । ତେଣୁ ଆପଣା 'ଅଦର୍ଶେ' କବି 'ସ୍ୱଭାବ କବି' ଏ ଅର୍ଥ ମଧ୍ୟ ଅତ୍ୟନ୍ତ ସଙ୍ଗତ ।

ଗଙ୍ଗାଧର 'ସ୍ୱଭାବ କବି' ରହିବେ । ତାଙ୍କ ପ୍ରିୟ ଦେଶବାସୀର ଏହା ଏକ ପ୍ରାଣଭରା ଆସ୍ମୀୟ ସଂବୋଧନ । ଦାରିଦ୍ର୍ୟ ଓ ଅଶିକ୍ଷାର ପଙ୍କ ମଧ୍ୟରେ ସେ ପ୍ରତିଭାର ସମର୍ଥନ କରିବା ଏକାନ୍ତ ଭ୍ରମାତ୍ମକ । ବରଂ ଗଙ୍ଗାଧରଙ୍କ ନିଜ ନୀତି, ଭାବ, ଆଦର୍ଶ ଓ ଦାର୍ଶନିକ ଚେତନାର ଭିତ୍ତିରେ ତାଙ୍କ ପ୍ରତିଭାର ଲୀଳା ତାଙ୍କୁ ସ୍ୱଭାବ କବି କରି ରଖିଥାଉ, ଏହା ହିଁ କାମ୍ୟ ।

## ଜୀବନ କାବ୍ୟ .

'ସ୍ୱଭାବ କବି' ପଦବୀର ଏହି ସୂଚନା ଅବଲମ୍ବନରେ ତାଙ୍କର ସମଗ୍ର କାବ୍ୟ ସୃଷ୍ଟିକୁ ତାଙ୍କର ଜୀବନ-କାବ୍ୟ କହିବା ସମୀଚୀନ ମନେ ହୁଏ । କେହି କେହି ସମାଲୋଚକ ମତ ପ୍ରକାଶ କରିଛନ୍ତି ଯେ ତାଙ୍କ ନିଜ ଜୀବନରେ ଦାରିଦ୍ର୍ୟ ଓ ଜଂଜାଳର କଷଣ ଯୋଗୁଁ ଗଙ୍ଗାଧର ଭାରତୀୟ କାବ୍ୟ ପରଂପରାର କେତେକ ନିର୍ଯାତନାର କାହାଣୀକୁ ଆପଣା କାବ୍ୟର ଆଖ୍ୟାନ ବସ୍ତୁ ରୂପେ ଗ୍ରହଣ କରି-ଗଲେ । ଏ ମତର ପରୀକ୍ଷା ଆବଶ୍ୟକ । ଗଙ୍ଗାଧରଙ୍କ ସମଗ୍ର ସୃଷ୍ଟିର ଆବରଣ ସ୍ୱରୂପ ରହିଛି ତାଙ୍କର ଏକ ବିଶିଷ୍ଟ ବାଣୀ—ଆଦର୍ଶ ଓ ନୀତିର ବିଜୟ । ପାପ ଓ ଦୁଃଖର ଆବର୍ତ୍ତ ମଧ୍ୟରେ ହିଁ ଆଦର୍ଶ ହୁଏ ଦୀପ୍ତିମନ୍ତ, ଜୀବନ ତଥା ସମାଲୋଚନା କ୍ଷେତ୍ରରେ ଏହା ଏକ ସର୍ବବାଦ-ସମ୍ମତ ସତ୍ୟ । ତେଣୁ ଆଦର୍ଶର ଦୃପ୍ତ ବିଜୟ ଘୋଷଣା ଯାହାର ଲକ୍ଷ୍ୟ, ସେ ଯେ ଚରିତ୍ରର ନିର୍ଯାତନାମୟ କାହାଣୀକୁ ଜୀବନ୍ତ କରି ତୋଳିବା ଭିତରେ ହିଁ ଆପଣାର ସିଦ୍ଧି ହାସଲ କରିବ, ଏହାଛଡ଼ା ଗତ୍ୟନ୍ତର ଅଛି ? କି ଏଥିରେ ଗଙ୍ଗାଧରଙ୍କ ମିଥ୍ୟା-ଦାରିଦ୍ର୍ୟକୁ ଆଳ କରି ତାଙ୍କର ସମସ୍ତ ସାଧନାକୁ ତାଙ୍କ ଜୀବନର ଦୈନ୍ୟର ରୂପାନ୍ତର ବୋଲି କହିବାର

ଯଥାର୍ଥତା ଯେତେ ରହିଛି, ତଦପେକ୍ଷା ବଳବତ୍ତର ଯୁକ୍ତି ରହିଛି ଯେ ଗଙ୍ଗାଧର ( ତାଙ୍କର ତଥା-କଥିତ ଦାରିଦ୍ର୍ୟ ସତ୍ତ୍ୱେ ) ବ୍ୟକ୍ତିଗତ ଜୀବନରେ ଯେଉଁ ଆଦର୍ଶବାନ୍ ମହିମାସ୍ତ ଚରିତ୍ରର ଅଧିକାରୀ ହୋଇଥିଲେ ତାହାର ଶ୍ରେଷ୍ଠତା ପ୍ରତିପାଦନ ଅନୁରୋଧରେ ହିଁ ବାଛି ନେଇଥିଲେ ଅନୁରୂପ ନିର୍ଯ୍ୟାତନାର କାହାଣୀ, ( କାରଣ ତାହାଥିଲା କାବ୍ୟିକ ବା ଶୈଳ୍ପିକ ଆବଶ୍ୟକତା । ) ସମ୍ଭବତଃ ଏ କ୍ଷେତ୍ରରେ ବ୍ୟତିକ୍ରମ ହେଉଛି କାବ୍ୟଗୁଡ଼ିକର ପରିଣତି । 'କୀଚକ ବଧ'ରେ ସୈରିନ୍ଧ୍ରୀର ନିର୍ଯ୍ୟାତନା ସହିତ ପାପକର୍ମୀ କୀଚକର ମୃତ୍ୟୁରେ ଗଙ୍ଗାଧର "ଅଚଳ ହିମାଦ୍ରୋଷ୍ଟିତ......" ଗୋଟିଏ ପଦରେ ଯେଉଁ ଭାଷା ବର୍ଣ୍ଣନା କରିଛନ୍ତି ତହିଁରେ ପ୍ରକୃତିର ଉଲ୍ଲାସ ସହିତ କବିଙ୍କର ଆତ୍ମିକ ସମର୍ଥନ ପ୍ରକାଶ ପାଇଛି । 'ଶକୁନ୍ତଳା'ର ଦୁଃସ୍ୱପ୍ନକୁ ପ୍ରଶସ୍ତ ବିଷୟରୁ ମୁକ୍ତ ରଖି କବି ( ତଥାକଥିତ ନିର୍ଯ୍ୟାତିତା ) ବିରହିଣୀ ଶକୁନ୍ତଳାର ସମଗ୍ର ଦୁଃଖକୁ ଏପରି ଚିତ୍ରଣ କରିଛନ୍ତି ଯାହା ଯୋଗୁଁ ଶକୁନ୍ତଳାର ପତିବିରହର କାରଣ ହୋଇଯାଇଛି ମାତୃପୁର ନିବାସ । ଶେଷରେ ତପସ୍ୱିନୀ ସୀତାର ଅନ୍ତିମ ସ୍ୱପ୍ନ ମଧ୍ୟରେ କବି ସୀତାଙ୍କର ସମଗ୍ର କାରୁଣ୍ୟକୁ ଏକ କାଳଜୟୀ ଆନନ୍ଦରେ ପରିଣତ କରିଦେଇଛନ୍ତି । ତଥାପି କ'ଣ କହିବାକୁ ହେବ ଯେ କବି କାବ୍ୟରେ ନିର୍ଯ୍ୟାତିତ ଜୀବନ ପ୍ରଦର୍ଶନର ପକ୍ଷପାତୀ ?

ବରଂ ଯେଉଁ ପରିବେଶ ସ୍ୱଭାବ କବିର ଶତ ପରିକଳିତ ଆତ୍ମଗୋପନକାରୀ ଦାରିଦ୍ର୍ୟ ତଥା ସକଳ ଦୁଃଖର ଗ୍ରନ୍ଥି ଉପରେ ପଦ୍ମଭୁଲ୍ଲ ପ୍ରଫୁଲ୍ଲ ହୋଇ ଉଠେ, ତାଙ୍କ ଜୀବନରେ ମୂଲ୍ୟବୋଧ ଭିତ୍ତିରେ ଚରିତ୍ରଗତ ବ୍ୟବହାର ହିଁ କାବ୍ୟାକୃତ ହୋଇଛି କହିବା ସମୀଚୀନ ହେବ । ସ୍ୱଭାବ-କବିଙ୍କ ସ୍ୱଭାବ ହିଁ ତାଙ୍କ କାବ୍ୟରେ ରୂପ ପରିଗ୍ରହ କରିଛି ।

## (୬) ଗଙ୍ଗାଧରଙ୍କ ଯୁଗଚେତନା :

ମହାକବି ମାନଙ୍କ ରଚନାବଳୀରେ ତାଙ୍କର ପାରିପାର୍ଶ୍ୱିକ ଘଟଣାବଳୀର ପ୍ରତ୍ୟକ୍ଷ ବା ପରୋକ୍ଷ ଉଲ୍ଲେଖ ଦେଖାଯାଏ, ଏବଂ ଶତାବ୍ଦୀ ଶତାବ୍ଦୀ ପରେ ତହିଁରୁ ଐତିହାସିକ ଘଟଣାବଳୀର ସୂଚନା ମିଳେ । ଗଙ୍ଗାଧରଙ୍କ ରଚନାରେ, ବିଶେଷତଃ କ୍ଷୁଦ୍ର କବିତାବଳୀରେ ଏ ଦିଗଟି ଅତ୍ୟନ୍ତ ସ୍ପଷ୍ଟ । ତାଙ୍କ ସମକାଳର ସମାଜ, ଶିକ୍ଷା, ଶାସନ, ରାଜନୀତି, ଭାଷା, ସାହିତ୍ୟ, ସଂସ୍କୃତି, ପଟପତାଣି, କୃଷି, ପଞ୍ଚାୟତ ସଙ୍ଗଠନ, ପ୍ରତିଷ୍ଠିତ ତୀର୍ଥ ସହିତ ପ୍ରସିଦ୍ଧ କୀର୍ତ୍ତି, ସମସାମୟିକ ଘଟଣାବଳୀ,

ଆନ୍ଦୋଳନ ଉଦ୍‌ବୋଧନ ଏବଂ ସାମଗ୍ରିକ ଭାବେ ଜନଜୀବନର ବିସ୍ତୃତ ପରିଚୟ କ୍ଷେତ୍ର ହୋଇଛି ତାଙ୍କ ସାହିତ୍ୟ । ଏହା'ଛଡ଼ା ସେ 'ଉତ୍କଳ ପ୍ରଭା' 'ସମ୍ବଲପୁର ହିତୈଷିଣୀ'ରୁ ଆରମ୍ଭ କରି ୧୯୧୯ରେ ପ୍ରଥମେ ଆତ୍ମପ୍ରକାଶ କରିଥିବା 'ସ୍ୱଗଟଣ୍ଡ' ପର୍ଯ୍ୟନ୍ତ ତାଙ୍କ ସମୟର ସବୁ ପତ୍ରପତ୍ରିକାର ନାମୋଲ୍ଲେଖ କରିଛନ୍ତି ଏବଂ କେତେକ ପତ୍ରିକାର ପ୍ରଶଂସନୀୟ ଜନସେବାର କଥା ଲିପିବଦ୍ଧ କରିଛନ୍ତି । ତାଙ୍କର ଏହି ସମକାଳୀନ ଜୀବନର ପରିଚୟ ପ୍ରଦାନ ମଧ୍ୟରେ ଅତି ସ୍ପଷ୍ଟ ରୂପେ ଅଙ୍କିତ ହୋଇଛି ତାଙ୍କ ଆଦର୍ଶ ଓ ନୀତିପୂତ 'ସ୍ୱଭାବ' । ଫଳତଃ କବିତା ଗୁଡ଼ିକର ଆଭିମୁଖ୍ୟ ହୋଇଯାଇଛି ସୂକ୍ଷ୍ମ ଆଲୋଚନାତ୍ମକ ଓ ସଂସ୍କାର-ଧର୍ମୀ । କେତେକ ସ୍ଥଳରେ ତାଙ୍କ ବ୍ୟଙ୍ଗାତ୍ମକ ପ୍ରକାଶ-ଶୈଳୀ କବିତାଗୁଡ଼ିକୁ ଶାଣିତ ଆକ୍ଷେପର ତୀକ୍ଷ୍ଣଧାର ଯୋଗାଇଛି । ସ୍ଥାନେ ସ୍ଥାନେ ପ୍ରତ୍ୟକ୍ଷ କଥନ ମଧ୍ୟରେ କବି ହୋଇଛନ୍ତି ନୈତିକ ଓ ଗୁରୁ-ପ୍ରତିମ । ମୂଳତଃ, ଏହି କବିତା ଗୁଡ଼ିକରେ ସତ୍ୟ-ଶିବ-ସୁନ୍ଦରର ବିଭା ଅନନ୍ୟ ହୋଇଉଠିଛି ।

ଏହା ଉଲ୍ଲେଖଯୋଗ୍ୟ ଯେ ତାଙ୍କ ସମସାମୟିକ କବିମାନଙ୍କ ମଧ୍ୟରେ କେବଳ ଫକୀର ମୋହନଙ୍କ ସାହିତ୍ୟରେ ହିଁ ଯୁଗ ଓ ଜୀବନର ଏହି ବୈଶିଷ୍ଟ୍ୟର ସମକକ୍ଷ ପ୍ରକାଶ ଦେଖିବାକୁ ମିଳିଥାଏ ।

(୩) ଜାତୀୟତାର କବି :

ଗଙ୍ଗାଧରଙ୍କ ଜାତୀୟଭାବ ଚେତନାର ପ୍ରଥମ ସ୍ଫୁରଣ ହୋଇଥିଲା ଓଡ଼ିଆ ଭାଷାର ନିର୍ଯ୍ୟାତନା ପ୍ରସଙ୍ଗରେ 'ଉତ୍କଳ-ଲକ୍ଷ୍ମୀ' କାବ୍ୟରେ । ମଧ୍ୟ ପ୍ରଦେଶରେ ଥିବା ସମ୍ବଲପୁରର ଓଡ଼ିଆ ଲୋକମାନଙ୍କ ଉପରେ ଯେତେବେଳେ ହିନ୍ଦୀକୁ ଲଦି ଦିଆ-ଯିବାର ପ୍ରସ୍ତାବ ଉଠିଲା ଏବଂ ସମ୍ବଲପୁରର ଶିଷ୍ଟ ଲୋକେ ତାହାର ବିରୋଧ ପାଇଁ ଅଣ୍ଟାଭିଡ଼ି ବାହାରିଥିଲେ ସେହି ସମୟର ଦୁଇଟି କବିତା 'ଭାରତୀ ରୋଦନ' ଏବଂ 'ଉତ୍କଳଭାରତୀଙ୍କ ନିବେଦନ' 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶିତ ହେବାରେ ଗଙ୍ଗାଧରଙ୍କ ଜାତୀୟ ଭାଷା ପ୍ରତି ମମତା ଘୋଷିତ ହୋଇଥିଲା । କିନ୍ତୁ 'ଉତ୍କଳଲକ୍ଷ୍ମୀ'ରେ ଛିନ୍ନ ବିଚ୍ଛିନ୍ନ ଓଡ଼ିଆଭାଷୀ ଅଞ୍ଚଳର ଏକୀକୃତ ରୂପକୁ ଏକ ରାଜରାଜେଶ୍ୱରୀ ରୂପେ କଳ୍ପନା କରି ଗଙ୍ଗାଧର ଜାତୀୟ କାବ୍ୟ ରଚନା କରିବାରେ ସମଗ୍ର ଓଡ଼ିଆ ସାହିତ୍ୟରେ ଅଗ୍ରଣୀ ହୋଇଯାଇଛନ୍ତି । ଏହାଛଡ଼ା 'ଅର୍ଘ୍ୟଥାଳି' ଏବଂ 'କବିତାମାଳା'ର ୯୮ ଗୋଟି କବିତା ମଧ୍ୟରୁ ୨୦ଟି କବିତାରେ ଗଙ୍ଗାଧର ଯେଉଁ ଭାବରେ ଅନୁପ୍ରାଣିତ ହୋଇଛନ୍ତି ତାହାର କେନ୍ଦ୍ରରେ ଅଛି ଓଡ଼ିଆର ଅନୈକ୍ୟ

ଏବଂ ଓଡ଼ିଆ ଜାତିର ଦୈନ୍ୟ ଓ ଅକର୍ମଣ୍ୟ ଅଭାବ ଅଭିଯୋଗ ଦୁଃଖ । ସେ ଆହ୍ୱାନ ଦେଇଯାଇଛନ୍ତି "କୋଟିଏ କଣ୍ଠରେ, କୋଟିଏ ରବରେ" ସମ୍ମିଳିତ ଭାବେ ଚିତ୍କାର ନ କଲେ ମୁକ୍ତି ନାହିଁ । "ଉତ୍କଳବାସୀଏ, ଉତ୍କଳଭାଷୀଏ ଯହିଁ ଇଚ୍ଛା ତହିଁ ଥାଅ" ସମସ୍ତେ ଏକ ପ୍ରାଣରେ ଅନୁଭବ କର ଭୂମି ଭାଷା ତଥା ସଂସ୍କୃତିର ଐକ୍ୟ । ଏହା ଥିଲା ତାଙ୍କ ପ୍ରାଣର ଆବେଦନ । ତାହା ସହିତ କେତେ କେତେ ଅବସରରେ ସେ ଜାତିର ହୀନ ଆଚରଣ, ଦୁର୍ବଳତା ଓ ଅଭାବର କଟୁ ଆକ୍ଷେପପୂର୍ଣ୍ଣ ସମାଲୋଚନା କରି ଦର୍ଶାଇଛନ୍ତି ଉନ୍ନତିର ମାର୍ଗ । ପୁନଶ୍ଚ 'କୀଚକ ବଧ' 'ପ୍ରଣୟବଲ୍ଲରୀ' ଓ 'ତପସ୍ୱିନୀ' କାବ୍ୟରେ ତାଙ୍କ ପ୍ରକୃତ ଚିତ୍ରଣରେ ଏକ ଅଭିମୁଖ୍ୟ ରହିଛି—ଭାରତୀୟତା ପରିପ୍ରେକ୍ଷୀରେ ଆମ ଓଡ଼ିଶାର ପ୍ରକୃତିକୁ ସ୍ଥାନ ଦେବା । କାଳିଦାସଙ୍କ 'ଶକୁନ୍ତଳା' ନାଟକ ଅନୁସରଣ ବେଳେ ମଧ୍ୟ ଲକ୍ଷ୍ୟ ରଖିଛନ୍ତି ଶକୁନ୍ତଳାକୁ ଉତ୍କଳ-ଲଲନା କରିଦେବାକୁ । ଦେବାସୁର ଯୁଦ୍ଧ ପ୍ରସଙ୍ଗରେ ଓଡ଼ିଶାର ନୀଳାଚଳକୁ ନେଇ ଏକ କାଳ୍ପନିକ କାହାଣୀ ବିନ୍ୟାସ କରିଛନ୍ତି । ଏହା ମଧ୍ୟରେ ଏକ ପ୍ରବୃତ୍ତି ରୂପେ ରହିଥିଲା ଗଙ୍ଗାଧରଙ୍କ ସ୍ୱାଚ୍ଛନ୍ଦ୍ୟ ଏବଂ ଓଡ଼ିଶା ପ୍ରୀତି ।

ତାଙ୍କ ଜାତୀୟତାର ସମ୍ପ୍ରସାରିତ ରୂପ ଦେଖିବାକୁ ମିଳିଥିଲା ଜୀବନ-ଅପରାହ୍ଣର ଶେଷ ଝଲକ 'ଭାରତୀ-ଭାବନା'ରେ । ଏଥିରେ ମନୋରମ କାବ୍ୟ-ଶୈଳୀରେ ଶ୍ଳେଷାତ୍ମକ ଭାବେ ବ୍ରିଟିଶ୍ ରାଜତ୍ୱର ସକଳ ଦୁର୍ନୀତି ଏବଂ ପତିତ ଭାରତୀୟ ଜୀବନର କଳଙ୍କ ବର୍ଣ୍ଣିତ ହୋଇଛି । "କାନ୍ତା ସମ୍ମିତ', ଉପଦେଶର ବଳିଷ୍ଠ ସୂଚନାରେ ଯେଉଁ ପ୍ରେରଣା ଥାଏ ତାହା ହିଁ ଯୁଗେ ଯୁଗେ ମହୀୟ ମାର୍ଗ । ତେଣୁ ଭାରତୀୟଙ୍କୁ ସଚେତନ କରିବାର ଯେଉଁ ପ୍ରଚଣ୍ଡ ଶକ୍ତି ଏଥିରେ ନିହିତ ଅଛି ତାହା ହିଁ କାବ୍ୟକାର ଗଙ୍ଗାଧରଙ୍କ ରୂପକ ରଚନାର ତଥା ତାଙ୍କ ଜାତୀୟ ଚେତନାର ମୂଲ୍ୟ ନିରୂପଣର ନିୟାମକ ।

(୪) ପ୍ରକୃତି କବି :

ସ୍ୱଭାବ କବି ଆଖ୍ୟା ସହିତ ଗଙ୍ଗାଧରଙ୍କ ଅପର ସର୍ବସାଧାରଣ ପରିଚୟ ହେଉଛି ସେ ଥିଲେ ପ୍ରକୃତି କବି । ଏ କ୍ଷେତ୍ରରେ ମଧ୍ୟ ତାଙ୍କ କବି ଦୃଷ୍ଟିର ମାର୍ଗ ପ୍ରଦର୍ଶନ କରିଥିଲେ କବିବର ରାଧାନାଥ । ରୂପପାୟୀ ରାଧାନାଥ ଯେପରି ତାଙ୍କ ଜୀବନର ବହୁଳ ପର୍ଯ୍ୟଟନ କାଳରେ ଓଡ଼ିଶାର ପୂର୍ବାଞ୍ଚଳୀୟ ପ୍ରକୃତିର ଅନ୍ତରଙ୍ଗ ପର୍ଯ୍ୟବେକ୍ଷଣରେ ସୁବିଧା ପାଇଥିଲେ ଏବଂ ତାଙ୍କ କାବ୍ୟରେ ଉତ୍କଳୀୟ

ପ୍ରକୃତିର ଯେଉଁ ଜୀବନ୍ତ ଆଲେଖ୍ୟ ପ୍ରକାଶ ପାଇଛି ତାହା ସେ କାଳର ସେହି ପ୍ରାଞ୍ଚଳୀୟ ରାଜନୈତିକ ଓଡ଼ିଶାର ସୀମା ମଧ୍ୟରେ ଆବଦ୍ଧ । ଗଙ୍ଗାଧର ଏହାର ପରି-ପୂରକତା କଲେ । ପ୍ରଥମତଃ ତାଙ୍କର ପରିବେଶଙ୍କନ ସୀମିତ ଥିଲା ଓଡ଼ିଶାର ପଶ୍ଚିମାଞ୍ଚଳ ମଧ୍ୟରେ,—ଏ ପ୍ରକୃତିକୁ ସେ ରାଧାନାଥଙ୍କ ଭଳି ନିବିଡ଼ ଭାବେ ଦେଖିଥିଲେ । ଦ୍ୱିତୀୟତଃ, ଗଙ୍ଗାଧର ରାଜନୈତିକ ଓଡ଼ିଶା ବାହାରେ ରହୁଥିବାରୁ ଓଡ଼ିଆ ଭାଷା ଓ ସଂସ୍କୃତି ଭିତ୍ତିରେ ପଶ୍ଚିମାଞ୍ଚଳୀୟ ପ୍ରକୃତିକୁ ଓଡ଼ିଶାର ପ୍ରକୃତି ଭାବରେ ମାନ୍ୟତା ଦେବାର ଆନୁକୂଲ୍ୟ ନେଇ କାବ୍ୟ ରଚନା କରିଥିଲେ । ଏ ଯେ ଜନାବଦ୍ଧ ଚେତନାର ଆଦ୍ୟ-ପ୍ରମାଣ 'ଉତ୍କଳ-ଲକ୍ଷ୍ମୀ' କାବ୍ୟ । ଏଥିରେ ରାଧାନାଥଙ୍କ ମନୋହରଣ ମଧ୍ୟରେ ସମଗ୍ର ପ୍ରାଞ୍ଚଳୀୟ ପ୍ରକୃତିର ସଂକ୍ଷିପ୍ତ ପରିଚୟ ଦେଇ କବି ପଶ୍ଚିମର ଦୃଶ୍ୟ ପ୍ରଦର୍ଶନ ପାଇଁ ଏକ ସହଯୋଗୀ ମଞ୍ଚ ପ୍ରସ୍ତୁତ କରିଛନ୍ତି । 'ଉତ୍କଳ ଲକ୍ଷ୍ମୀ'ର ଅଙ୍କିତ ପ୍ରକୃତିର ବର୍ଣ୍ଣନାରେ ଟେକ୍‌ନିକ୍ ଦୃଷ୍ଟିରୁ ମଧ୍ୟ ଆମେ ପ୍ରଥମେ ଦେଖୁଁ ରାଧାନାଥ ଶୈଳୀର ଜୀବନ୍ତ ଛବି ।

"କେମନ୍ତ ଝୀଣଲେ ଗୋଧୂଳି ମସ୍ତକେ
କାଳଖଣ୍ଡେ ଦେଇ ଖଚି
ତୋ ଲାଗି ଥୋଇଛୁ 'ଗୁମ୍‌ଦହ" ଗର୍ଭେ
ଭବ୍ୟ ମଥାମଣି ରଚି ।"

ଅଥବା

ବେଲଣର ଶୋଭା ବର୍ଦ୍ଧନ କାରଣେ
ହୋଇଅଛୁ ସମାହାର,
ସୁନ୍ଦର ପ୍ରତିମା ଗଲେ ଦେଲୁ ବାନ୍ଧି
ଇନ୍ଦ୍ରନୀଳମଣି-ହାର ।"

ଏ ଚିତ୍ର ରୂପକାର ଗଙ୍ଗାଧରଙ୍କ ଲେଖନୀର ଯେଉଁ ସିଦ୍ଧି ଦର୍ଶାଇଥାଏ ତାହାର ବହୁଳ ପ୍ରୟୋଗ ମିଳେ 'କବିତା କଲ୍ଲୋଳ'ର ତଥା 'ଅର୍ଘ୍ୟଥାଳି'ର ପ୍ରକୃତି କବିତାମାନଙ୍କରେ । ତାହାଛଡ଼ା ମୁଗ୍ଧ କବିଙ୍କର ଲେଖନୀ ପ୍ରକୃତିର ଉପରେ ସଂଶ୍ଳିଷ୍ଟ ଚିତ୍ରର ବହୁଳ ଅଙ୍କନ କରି ଯାଇଛି 'କୀଚକ ବଧ' 'ପ୍ରଣୟବଲ୍ଲରୀ' ଓ 'ତପସ୍ୱିନୀ' କାବ୍ୟ ମାନଙ୍କରେ । ଏଠାରେ ମଧ୍ୟ ଉଲ୍ଲେଖଯୋଗ୍ୟ ଯେ ଏହି କାବ୍ୟ ସବୁର ଆଖ୍ୟାନ ବସ୍ତୁ ଗୃହୀତ ହୋଇଛି ଭାରତୀୟ କ୍ଷେତ୍ରରୁ ଏବଂ ଏମାନଙ୍କର

ଘଟଣାମାନ ମଧ୍ୟ ଓଡ଼ିଶାକୁ ଛାଡ଼ି କେତେ ଦୂରର ଦେଶ । ତଥାପି ଏମାନଙ୍କରେ ବର୍ଣ୍ଣିତ ନଦୀ ପର୍ବତ ପତ୍ର ପୁଷ୍ପଫଳରେ ରହିଛି ଓଡ଼ିଶା ଓ ପଶ୍ଚିମ ଓଡ଼ିଶାର ଚିତ୍ର । 'କୀଚକବଧ'ରେ ବସନ୍ତର କାନନସଜ୍ଜା ହୋଇଛି ସ୍ୱଭାବସୁଲଭ ମଣିମୁକ୍ତାରେ ଓ ବକୁଳ ପୁଷ୍ପର ଦନ୍ତୁଡ଼ିରେ, 'ତପସ୍ୱିନୀ'ରେ ପୋଖରୀ ଗଛ, ତାଳଗଛ, ଚନଚମ୍ପା ଫୁଲ ସହିତ ପତ୍ରସ୍ଥିତ ସ୍ୱଷୀ, ଫୁଲଚୁହି, ଠେଙ୍ଗୁଣୀ, ଡମା ( ଗୋଡଗ୍ୱ ) ପ୍ରଭୃତି ପକ୍ଷୀର ଗୋଷ୍ଠୀ । ପୂର୍ଣ୍ଣ କାବ୍ୟମାନଙ୍କର ଗୁରୁ ଚରିତ୍ରରେ ମଧ୍ୟ ସମ୍ବଲପୁରର ସ୍ଥୂଳର ରୂପ ପ୍ରାପ୍ତ ପୁଷ୍ଟ ।

କିନ୍ତୁ ବାହ୍ୟ ପ୍ରକୃତି ଅପେକ୍ଷା ଅନ୍ତଃପ୍ରକୃତି ଚିତ୍ରଣରେ ଗଙ୍ଗାଧରଙ୍କ ସଫଳତା ଅଧିକ କୀର୍ତ୍ତିତ ହୋଇଛି । ଏ କ୍ଷେତ୍ରରେ ସ୍ୱୟଂ କବିବର ରାଧାନାଥ ତାଙ୍କ 'କୀଚକ ବଧ' ଭକ୍ତିରେ ପ୍ରଶଂସା କରି କହିଥିଲେ, ଗଙ୍ଗାଧରଙ୍କ ପ୍ରକୃତି ରବପ୍ରଧାନ ନୁହେଁ, ରସପ୍ରଧାନ । ଏହି ପ୍ରସଙ୍ଗରେ ସମାଲୋଚକମାନେ ବହୁ ଦୃଷ୍ଟାନ୍ତ ସହ ଦର୍ଶାଇଛନ୍ତି ଗଙ୍ଗାଧରଙ୍କ ପ୍ରକୃତିରେ ଅନ୍ତଃପ୍ରକୃତିର ଲୀଳା । ମଣିଷର ପରିବେଷ୍ଟନୀରେ ନୈସର୍ଗିକ ସହଚର ରୂପେ ରହିଛି ତାର ହସ, କାନ୍ଦ, ଆଶା, ଅଭିଳାଷ, ଆଶଙ୍କା ଅଭିମାନ ସବୁର ଚିତ୍ର ବହନ କରେ । ସୂଚନା ଦିଏ ଭାବୀ ଜୀବନର । ସଖୀ, ଧାତ୍ରୀ, ମାତା, ଗୁରୁରୂପେ ଜୀବନଶିକ୍ଷା ଦେଇ ମହତ୍ତ୍ୱର କୋଠୀକୁ ନେଇଯିବାରେ ସହଯୋଗ କରେ । ତପସ୍ୱିନୀ ସୀତାର ଏକମାତ୍ର ସମାନ୍ତରାଳ ଚରିତ୍ର ରୂପେ ପ୍ରକୃତିର ପରିକଳ୍ପନା ମଧ୍ୟରେ ତାହାର ଯେଉଁ ବାକ୍-ଚେତନା ରହିଛି ତାହାର ତୁଳନା ସେହି । ଖାଲି ସେତିକି ନୁହେଁ ମଣିଷର ବାସ୍ତବ ଜୀବନ-ନାଟକ ପାଇଁ ପରିବେଶ ଯୋଗାଏ ପ୍ରକୃତି, କାବ୍ୟରେ ମଧ୍ୟ ପ୍ରକୃତି ହୋଇଯାଇଛି ଏକ ଆବରଣାତ୍ମକ ଖୋଳ । ଏ ସବୁର ଆଲୋଚନା ହୋଇଯାଇଛି, କିନ୍ତୁ ବିସ୍ତାରର ଅବସର ନାହିଁ । ନିଶ୍ଚିନ୍ତ ମନରେ ଅଧ୍ୟୟନ କଲେ ସହୃଦୟ ପାଠକ ଆପଣା ମନମୁକୁରରେ କବିଙ୍କର ଯେଉଁ ପ୍ରାଣଚିତ୍ର ଆବିଷ୍କାର କରିବେ ତାହାର ରୂପାୟନ କ୍ଷେତ୍ରରେ ମଧ୍ୟ ନବଦିଗନ୍ତ ଯୋଗାଇବ ଏବେ ମଧ୍ୟ ସେହି ପ୍ରକୃତି । ଏ ରସାନୁଗୁଣ ପ୍ରକୃତି-ଚିତ୍ରର ଗୋଟିଏ ମାତ୍ର ଦୃଷ୍ଟାନ୍ତ ବିଚାରକୁ ନିଆଯାଉ । ଭୀମ ହସ୍ତରେ କୀଚକର ପ୍ରାଣ ନିର୍ବାଣ ପରେ ଆସିଛି ବିରାଟ ଦେଶରେ ଉଷା । କବିଙ୍କ ଭାଷାରେ :

''ଅଳକ ଉଷାଯୋଷିତ କୁସୁମେ ହୋଇ ଭୂଷିତ
ଭ୍ରମର ଅଞ୍ଜନାଞ୍ଚିତ ପଦ୍ମଲୋଚନା

ରଜଗନ୍ଧନ କର୍କଣୀ ନକ୍ଷତ୍ରର କଣି କଣି
ଜୀବଜନ୍ତୁ ନେଇ କଣି ବ୍ରହ୍ମ ଦଶନା
ଅରୁଣ ଚରଣ ସୁନ୍ଦର
ପ୍ରଭାତ ତାରକା ମଥାମଣି ଭାସ୍ୱର ।"

ଏ ଉଷା ଏକ ନାରୀ - ଫୁଲବେଣୀ, ପଦ୍ମ ଆଖିରେ ଭ୍ରମର କଜ୍ଜଳ, ପକ୍ଷୀ-କଣ୍ଠରେ ଘୁଙ୍ଗୁର, ପ୍ରଭାତ ତାରାର ମଥାମଣି ପିନ୍ଧିଥିବା ବୃନ୍ଦହାସିନୀ ଉଷାର ଏହି ବେଶ ଅନ୍ତରାଳରେ ଅଛି ଏକ ନର୍ତ୍ତକୀର ଛାୟା—ପାପୀ ଜୀବକର ମୁଖରେ ସମସ୍ତ ପ୍ରକୃତି ଯେ କ ଶାନ୍ତ, ତୃପ୍ତି ଲାଭ କରନ୍ତି ତାହାର ପ୍ରତୀକ ଏହି ଗୋଟିଏ ମାତ୍ର ପଦରେ ବର୍ଣ୍ଣିତ ଉଷାର ହର୍ଷୋତ୍ପାଦକର ରୂପ । ପାପକର୍ମୀ ଜୀବଙ୍କ ପାଇଁ କେତେ କ୍ରୂର, କେତେ ନିର୍ମମ ଏ ପ୍ରକୃତି ! ସେହି ଉଷାର ଅପର ରୂପ 'ତପସ୍ୱିନୀ'ରେ :

"ଅରୁଣ କଷାୟ ବାସ କୁସୁମ କାନ୍ତି ବିକାଶ
ପ୍ରଶାନ୍ତରୂପ ବିଶ୍ୱାସ ଦଅନ୍ତି ମନେ
କେଉଁ ଯୋଗେଶ୍ୱରୀ ଆସି ମଧୁର ହସେ ଅଶ୍ୱାସି
ହାଲୁଛନ୍ତି ଦୁଃଖରାଶି ଉପଶମନେ
ଦେବା ପାଇଁ ନବ ଜୀବନ
ସ୍ୱର୍ଗୁଁ କି ଓହ୍ଲାଇଛନ୍ତି ମର୍ତ୍ତ୍ୟଭୁବନ ।"

ସେହି ସେ ସେକାଳର ଉଷା, ଏକ ଭିନ୍ନ ପରିପ୍ରେକ୍ଷୀରେ; ଯୋଗେଶ୍ୱରୀ ସାଜି ଆସିଛି । ଏଠିମଧ୍ୟ ପଦ୍ମରୂପକ ଆଖି ଖୋଲିଛି କଳ୍ପ ସତୀର ଦର୍ଶନ ଲଗି, ଏଠି ଅଛି ମାହାଲି-ମୁକ୍ତା ସତୀରାଜ୍ୟର ମହାରାଣୀ ସୀତା ପାଇଁ ତାହା ହେବ ଉପହାର । ଏଠି ବି ଅଛନ୍ତି ଭ୍ରମର-କୋକିଳ-ସୁରଭି-କୁମ୍ଭାଟୁଆ ଯାହାଙ୍କ ତୌର୍ଯ୍ୟତ୍ରିକାର ଲକ୍ଷ୍ୟ ହେଉଛି "ଉଠ ସତୀ-ରାଜ୍ୟରାଣୀ, ରାତି ପାହିଲା" ଆହ୍ୱାନ ଦେବେ, ଉଦ୍ଦେଶ୍ୟ ସୀତାର ସ୍ତୁତିଗାନ । କବି ଦୃଷ୍ଟିରେ କେତେ ସାମ୍ୟ, କେତେ ବୈଷମ୍ୟ ! ଚରିତ୍ର, ଘଟଣା, ଜୀବନ ପରିମାଣ, ନୀତି ଆଦର୍ଶ ସବୁକୁ ଆପଣା ସୂଚନାରେ ଅଙ୍ଗୀଭୂତ କରି କାବ୍ୟର ସମସ୍ତ ରସକୁ ମୂର୍ତ୍ତିମନ୍ତ କରି ପ୍ରତିଷ୍ଠା ଗଢି ତୋଳେ ଏହିଭଳି ପ୍ରକୃତି ଚିତ୍ର ।

ଏହା ଅପେକ୍ଷା ଅଧିକ ମନୋରମ ପ୍ରକୃତି ରାଜ୍ୟରେ ମାନବ-ଜୀବନର ସ୍ୱାଧୀନ ରୂପାୟନ ଏହିଭଳି ଏକ ସ୍ଥଳ ପ୍ରଣୟ-ବଲ୍ଲରୀ—ଷଷ୍ଠ ସର୍ଗର ବସନ୍ତ ବର୍ଣ୍ଣନା;

ଶିଶିର ରାଜାଙ୍କ ଘରେ ପୁତ୍ରଟିଏ ଜନ୍ମ ହେଲା । ରାଜପୁତ୍ରର ଜନ୍ମ ସମ୍ବାଦ ଗଛରୁ ଝଡ଼ିଥିବା ଶୁଖିଲାପତ୍ରରେ ସତେ ଅବା ହଳଦୀ ଲଗାଇ ଲକ୍ଷ ଲକ୍ଷ ସଂଖ୍ୟାର ନିମନ୍ତ୍ରଣ ପତ୍ର ବଣ୍ଟାହେଉଛି ରାଜସଦନରୁ, ପୁଅର ଏକୋଇଶା ନାମକରଣ ହେବ । ସମସ୍ତ ବନଭୂମିର ଫୁଲେ ଫୁଲେ ଭଣ୍ଡ ଦିଆଗଲା ଦ୍ୱିଜରୂପୀ ଦ୍ୱିଜ ( ପକ୍ଷୀ )-ଙ୍କର ଆହାର୍ଯ୍ୟ ମଧୁ ଭୋଜି ଉଦ୍ଦେଶ୍ୟରେ । କଳରବ-ମିଶ୍ରିତ ମହା କୋଳାହଳ ମଧ୍ୟରେ ନାମକରଣ ହେଲା 'ବସନ୍ତ' । ଭୋଜି ଖାଇଲେ ଦ୍ୱିଜମାନେ, ଲୋଭୀ ପିଏ, ମଧୁ ତ ଖାଇଲେ, ତା ସହିତ କଣ୍ଟକ ମଧ୍ୟ ଲୋଭରେ ଖାଇଗଲେ । ପୁଅର ବୟସ ସହିତ କେତେ ବଢ଼ିଲା । ଶେଷରେ—

"ପୁତ୍ରେ ରାଜ୍ୟ ଦେଇ ଶିଶିର ପର୍ବତ
ତଳେ ଯାଇ କଲା ବାସ ।"

ବାନପ୍ରସ୍ଥର ଏହି ବନବାସ ପରେ ରାଜା ଶିଶିର "ତନୁ ତ୍ୟାଗ କଲା ଘୋର ତପେ ( ଗ୍ରୀଷ୍ମରେ ଚଉଦିଗେ ଜାଳି ଅଗ୍ନିସ୍ନାନ ( ବନାଗ୍ନି ) ।" ଏକ ସମ୍ପୂର୍ଣ୍ଣ ଜୀବନ ଚିତ୍ର । ଆପାତତଃ ଏହା ଏକ ସ୍ୱତନ୍ତ୍ର ବର୍ଣ୍ଣନା ହେଲେ ମଧ୍ୟ ରାଜା ଦୁଷ୍ମନ୍ତଙ୍କର ଜୀବନ-ନାଟକର ଏକ ପରୋକ୍ଷ ଚିତ୍ର ମଧ୍ୟରେ ରାଜାଙ୍କର ଅଗାମୀ ଶକୁନ୍ତଳା-ବିରହ ଦୁଃଖ ପାଇଁ କ୍ଷେତ୍ର ଯୋଗାଇଛି ଏ ବସନ୍ତ, ଏବଂ ଫଳତଃ ଗଳ୍ପାଂଶ ସହିତ ସଂପୃକ୍ତ ହୋଇପଡ଼ିଛି ।

ଏହି ଦୃଷ୍ଟିରୁ ଅନେକ ସମାଲୋଚକଙ୍କ ମତରେ ଗଙ୍ଗାଧରଙ୍କ ପ୍ରକୃତିର ପ୍ରୟୋଗ ଇଂରାଜୀ ସାହିତ୍ୟରେ କବି ଓ୍ୱାର୍ଡସ୍‌ଓ୍ୱାର୍ଥ (Wordsworth)ଙ୍କ ପ୍ରକୃତି ଚିତ୍ରଣର ଆଭିମୁଖ୍ୟ ସହିତ ବହୁଳଭାବେ ସାମଞ୍ଜସ୍ୟଯୁକ୍ତ ହୋଇପଡ଼ିଛି । ଏ ସାମ୍ୟ ଯଦି ସ୍ୱୀକାର କରିବାକୁ ହୁଏ ତାହାହେଲେ ଏହା ଉଲ୍ଲେଖଯୋଗ୍ୟ ଯେ, ଏହା ଅନୁକରଣ—ଅନୁସରଣ ନୁହେଁ, ଏହା ଗଙ୍ଗାଧରଙ୍କ ସ୍ୱୟଂକ୍ରିୟ ପ୍ରତିଭାର ଅବଦାନ; କାରଣ ସେ Wordsworthଙ୍କ କବିତା ଅଧ୍ୟୟନ କରି ନ ଥିଲେ ।

(୫) ନାରୀ ଚରିତ୍ର :

'କୀଚକ ବଧ'ର ତିନୋଟି ନାରୀ ହେଲେ ସୈରିନ୍ଧ୍ରୀ, ସୁଦେଷ୍ଣା, ଚପଳା । 'ପ୍ରଣୟବଲ୍ଲରୀ'ରେ ଶକୁନ୍ତଳା, ପ୍ରିୟମ୍ବଦା, ଅନସୂୟା, ଗୌତମୀ ଏବଂ 'ତପସ୍ୱିନୀ'ରେ

ସୀତା ଓ ଶକୁନ୍ତଳା । 'ଅଯୋଧ୍ୟା ଦୃଶ୍ୟ'ରେ କୌଶଲ୍ୟା । ଏମାନଙ୍କ ମଧ୍ୟରେ ଯୌବନମୀ ଶକୁନ୍ତଳା ଓ କୌଶଲ୍ୟା ମଧ୍ୟରେ ଫୁଟିଛି ମାତାର ଚିତ୍ର । ପ୍ରିୟଂବଦା ଓ ଅନସୂୟା ସଖୀ ଭାବରେ ଶକୁନ୍ତଳାର ଛଳଛଳ ସ୍ନେହ-କୋଳରେ ଅତ୍ୟାଜ୍ଞାତକଭାବେ ଝଟିଲେ ସାରୀ, ସତ୍ୟବତୀ । କୌତୂହଳ, ପରିହାସ ସହିତ ସଙ୍ଗେ ଶକୁନ୍ତଳାର ସୌଖ୍ୟ ସେମାନଙ୍କର ଧ୍ୟେୟ । ସୁଦେଷ୍ଣା ସାଧ୍ୱୀ ସ୍ୱାଜରାଣୀ; ସୈରନ୍ଧ୍ରୀଙ୍କର ଆଶ୍ରୟଦାତ୍ରୀ ଭାବରେ ତାଙ୍କ (ଦ୍ରୌପଦୀଙ୍କ) ଶୀଳ, ସମ୍ମାନ ରକ୍ଷାର ସ୍ୱତନ୍ତ୍ର ଦାୟିତ୍ୱ ପ୍ରତି ଅତ୍ୟନ୍ତ ସଚେତନ । ଭ୍ରାତା କୀଚକ ପ୍ରତି ତାଙ୍କର ସ୍ନେହରେ ସେ କାମୁକ କୀଚକର ମନ ଅଭିଳାଷ ପ୍ରତି ଅନ୍ଧ ହୋଇ ପଡ଼ି ନାହାନ୍ତି, ଆପଣାର ସାଧ୍ୱୀମର୍ଯ୍ୟାଦାରେ ସୁସ୍ଥିର । ଚପଳା ଏକମାତ୍ର ଦୁଷ୍ଟ ଚରିତ୍ର; ରାଜପୁରର ଦାସୀଭାବେ କାମୁକ କୀଚକର କ୍ଷୁଧା ପ୍ରଶମନ ପାଇଁ ତତ୍ପର ହେବାରେ ଅତ୍ୟନ୍ତ ବ୍ୟଗ୍ର ହୋଇ ଉଠିଛି । ସୁଦେଷ୍ଣାଙ୍କ ଭବନରେ ସେ ବସନ ଭୂଷଣାଦି ସବୁ ପ୍ରଲୋଭନ ପରିହାର କରିଛି; କିନ୍ତୁ ମାଲିନୀର ମନସ୍ତୁଷ୍ଟି ଦୃଷ୍ଟିରୁ କଳେ ବଳେ କୌଶଳେ ସୈରନ୍ଧ୍ରୀକୁ କୀଚକର କକ୍ଷକୁ ଆଣିଦେବାରେ ତା'ହାର କୂଟବୁଦ୍ଧି ଓ ଉଦ୍ୟମର ଆନ୍ତରିକତା ଯୋଗୁଁ ଏକାନ୍ତ ଅଙ୍ଗାଙ୍ଗୀ ଦାସୀର ଚରିତ୍ର ଦୃଷ୍ଟିରୁ ସାଫଲ୍ୟ ରହିଛି । 'ଇନ୍ଦୁମତୀ' କାବ୍ୟର ନାୟିକା ଅଜପତ୍ନୀ ଇନ୍ଦୁମତୀଙ୍କର ସକ୍ରିୟତା ଅଳ୍ପ ସ୍ୱୟଂବର ପର୍ଯ୍ୟନ୍ତ । ପରବର୍ତ୍ତୀ ଜୀବନରେ ତାଙ୍କର ଉପଯୋଗିତା ହେଉଛି ଆକସ୍ମିକ ମୃତ୍ୟୁ ଏବଂ ଫଳତଃ, ଅପସର୍ଗର ପ୍ରକୃତ ଭେଦ ହେଉଛି ମୃତଦାର ଅଜଙ୍କ ପତ୍ନୀ ପ୍ରୀତି ପରିପ୍ରେକ୍ଷୀରେ ଦାମ୍ପତ୍ୟର ଆଦର୍ଶ । ମନୁଷ୍ୟ ଧରଣୀର ଉପରେ ଯେଉଁଠି ମୃତ୍ୟୁ ଓ ଶୋକ ହେଉଛି ନଶ୍ୱାତ୍ମକ, ସେଠାରେ ଚରିତ୍ରର ବଳିଷ୍ଠ ଅବାନ୍ତର ।

ବାକି ମୁଖ୍ୟନାୟିକାମାନେ ରହିଲେ ସୈରନ୍ଧ୍ରୀ ଶକୁନ୍ତଳା ଏବଂ ସୀତା । ଏମାନେ ସମସ୍ତେ ବିବାହିତା । ପ୍ରେମ ପରିପ୍ରେକ୍ଷୀରେ ସୈରନ୍ଧ୍ରୀ ରାଜପୁରର ଆଶ୍ରିତା ରୂପସୀ ଭାବରେ କାମୁକ କୀଚକର ଯୌନକ୍ଷୁଧା ଜନିତ ପରୋକ୍ଷ ନାୟିକା ହେବାର ଯୋଗ୍ୟ । କିନ୍ତୁ ଆପଣାର ସତୀତ୍ୱ ଗୌରବରେ କୀଚକର ପ୍ରସ୍ତାବ ଓ ପ୍ରଲୋଭନ ପ୍ରତି ବିମୁଖୀ ଓ ଘୃଣାପରାୟଣା । ଅନ୍ୟପକ୍ଷରେ କୀଚକର ଲାଳସା ଦୁର୍ବାର, ତେଣୁ ହୋଇଛି ସଂଘର୍ଷ । ଏ ସଂଘର୍ଷ ଅତ୍ୟନ୍ତ ସ୍ଥୂଳ । ନାୟିକା ଯେପରି ପ୍ରତିକୂଳା, ନାୟକ ସେହିପରି ଅନନୁକୂଳ । ତେଣୁ ପୁଣି ସେହି ଗ୍ରନ୍ଥନାର ସୃଷ୍ଟିର ଚନ୍ଦ୍ରଭାଗା ସବୁ ଲୀଳା । ଚନ୍ଦ୍ରଭାଗା ସୈରନ୍ଧ୍ରୀ ମଧ୍ୟ ପଳାୟନ ପରାୟଣା । ଶେଷରେ ସମୁଦ୍ର ଜଳର ଆଶ୍ରୟ ନେଇ ଚନ୍ଦ୍ରଭାଗାର ମୁକ୍ତିଶକ୍ତିରୁ, ରକ୍ଷା କଲ ସୂର୍ଯ୍ୟଙ୍କ ଗ୍ରାସରୁ । କୀଚକ ଭଙ୍ଗି ତଳେ ଏକ ନମ୍ରମୁଖୀ ବୃକ୍ଷଶାଖାରେ କୀଚକ ପ୍ରଚଣ୍ଡ ଆଘାତ ପାଇ

ପତିବ୍ରତା ହେଲେ, ଫଳରେ ସୈରିନ୍ଧ୍ରୀ ବର୍ତ୍ତିଗଲେ । କିନ୍ତୁ ଏହାର ପରିଣାମରେ କୀଚକ ନିହତ ହେଲା ଭୀମର ମୁଷ୍ଟ୍ୟାଘାତରେ, ଯୁଧିଷ୍ଠିରଙ୍କ ଧର୍ମ—ବୋଧାର୍କର ମନ୍ଦର ବ୍ରଜିଲ୍ଲ ରାଧାନାଥଙ୍କ ଶିଳ୍ପୀ-ତରଣୀରେ । ସେ ଯାହା ହେଉ, ସମାଜ ମର୍ଯ୍ୟାଦା ରକ୍ଷା ନିହିତ ପାପର ପ୍ରାଣଦଣ୍ଡ 'କୀଚକ ବଧ' କାବ୍ୟର ଉପଜୀବ୍ୟ ।

ଶକୁନ୍ତଳା ଏବଂ ସୀତା ଉଭୟଙ୍କ ମଧ୍ୟରେ ଘଟଣା ଏବଂ ଜୀବନଟିର ପାର୍ଥକ୍ୟ ସତ୍ତ୍ୱେ ସ୍ପଷ୍ଟ ସାମ୍ୟ ରହିଛି । ଶକୁନ୍ତଳାର ଅଦ୍ୟାନ୍ତ-ଜୀବନ, ରାଜାଙ୍କ ପ୍ରଣୟ ଓ ପ୍ରତ୍ୟାଖ୍ୟାନର ଅଧ୍ୟାୟ ସମ୍ଭୋଗଶୃଙ୍ଗାରର ପ୍ରୟୋଗସ୍ଥଳ । ସୀତାଙ୍କ ଜୀବନର ଏ ଦୃଶ୍ୟ 'ତପସ୍ୱିନୀ'ର ୬ଷ୍ଠ, ୭ମ ସର୍ଗରେ ଅତୀତର ଅନୁଧ୍ୟାନ ମଧ୍ୟରେ ପ୍ରଦର୍ଶିତ ହୋଇଛି । ଏହାର ସାରକଥା ହେଲା ପତି ଓ ପତ୍ନୀ ଉଭୟଙ୍କର ନିଷ୍ଠା । ପୁଣି ଶକୁନ୍ତଳାର ଉତ୍ତର-ଜୀବନର ଆପାତ-କରୁଣ ବିଡ଼ମ୍ବନା ଏକ ପ୍ରତ୍ୟାଖ୍ୟାନ; ଠିକ୍ ସେହିପରି 'ତପସ୍ୱିନୀ'ର କେନ୍ଦ୍ର ଯେଉଁ ସୀତା ସେ ନିର୍ବାସିତା । ପ୍ରତ୍ୟାଖ୍ୟାନ ହେଉ ବା ନିର୍ବାସନ ହେଉ ଏହାକୁ ବିପ୍ରଲମ୍ଭ ଶୃଙ୍ଗାରର ଅନ୍ତର୍ଭୁକ୍ତ କରାଯାଇ ପାରିବ ନାହିଁ । କାରଣ ସେଥିରେ ପୁନର୍ମିଳନର ପ୍ରଶ୍ନ ନାହିଁ । ତାହା ବସ୍ତୁତଃ, ଶୋକାତ୍ମକ କରୁଣ । ଶକୁନ୍ତଳା ଏ କାରୁଣ୍ୟର ଶରବ୍ୟ ହୋଇ ମଧ୍ୟ ହୋଇନାହିଁ; କାରଣ କବିଙ୍କ ଶିଳ୍ପର ଲକ୍ଷ୍ୟ ହେଲା ଶକୁନ୍ତଳାର ସରଳ ମନକୁ ପ୍ରତ୍ୟାଖ୍ୟାନ-ଚେତନାରୁ ବଞ୍ଚାଇ ରଖିବା । ପକ୍ଷାନ୍ତରେ ସୀତା ନିର୍ବାସନ ବିଷୟରେ ରାଜାଦେଶ ଶୁଣିଛନ୍ତି; ତାହାର ସତ୍ୟ ଅସ୍ୱୀକାର କରିବାର ଉପାୟ ନ ଥିଲେ ମଧ୍ୟ ରାମପ୍ରେମରେ ଅଗାଧ ନିଷ୍ଠା ଓ ବିଶ୍ୱାସ ଯୋଗୁଁ ନିର୍ବାସନକୁ ଏକ ଦୈହିକ ବିଚ୍ଛେଦ ମାତ୍ର ଗ୍ରହଣ କରିଥିବାରୁ ତାଙ୍କର ମନ ମଧ୍ୟ ଅକ୍ଷତ ହୋଇ ରହିଛି । ଏହି ଉଭୟ ଚରିତ୍ରର ଏହି ସାମ୍ୟ ଶିଳ୍ପୀ-ଚେତନାର ଏକ ନିର୍ଦ୍ଦିଷ୍ଟ ପ୍ରକାଶ ବୋଲି କହିବା ଅସଙ୍ଗତ ନୁହେଁ । ଶେଷରେ ଦୁଷ୍ମନ୍ତଙ୍କ ସହ ପୁନର୍ମିଳନ କାଳରେ ଶକୁନ୍ତଳା ଆପଣାର ସାରଲ୍ୟ ଯୋଗୁଁ ଯେଉଁ ଅନାବିଳ ଆନନ୍ଦର ଅଧିକାରିଣୀ ହୋଇଛି, ରାମଙ୍କ ଅଶ୍ୱମେଧ ଯଜ୍ଞରେ ସ୍ୱର୍ଣ୍ଣ-ସୀତା-ଉପସ୍ଥାପନ ସମ୍ବାଦ ମଧ୍ୟ ଜାନକୀଙ୍କୁ ସେହିପରି ଆନନ୍ଦରେ ଆତ୍ମହରା କରି ଦେଇଛି । ଏ ଉଭୟ ଚରିତ୍ରରେ ଏହିପରି ସର୍ବେ ଆମୂଳଚୂଳ ଯେଉଁ ସାମ୍ୟ ରହିଛି ତାହା ମେହେରଙ୍କ ତତ୍ତ୍ୱରେ ବର୍ଣ୍ଣିତ ଭାରତୀୟ ଆଦର୍ଶନାରୀର ଏକ ମୌଳିକ ରୂପାୟନ । ପକ୍ଷାନ୍ତରେ ସୈରିନ୍ଧ୍ରୀ ସତୀତ୍ୱ ଓ ଆଦର୍ଶ ଦୃଷ୍ଟିରୁ ଆଜନ୍ମପିଣ୍ଡା ଏକ ସମାଲୋଚ୍ୟ ଚରିତ୍ର ହୋଇଥିବାରୁ ଗ୍ରନ୍ଥଲେଖନର ବିରୋଧ ଏଡ଼ାଇ ମଧ୍ୟସ୍ଥ ହୋଇଛନ୍ତି । ଏ ତିନୋଟି ଯାକ ଚରିତ୍ର ଗୋଟିଏ ଗ୍ରୁପ ବା ମଡେଲରେ ଗଢ଼ା ହୋଇଛନ୍ତି ମେହେରଙ୍କ ସ୍ଥିର ଧାରଣା ଉଡ଼ିବେ ।

ପ୍ରେମ ବ୍ୟତୀତ ଶକୁନ୍ତଳା ଓ ସୀତା ଚରିତ୍ରଦ୍ୱୟର ଅପର ଏକ ପ୍ରକାଶ ବାତ୍ସଲ୍ୟ । ଶକୁନ୍ତଳା ବିଷୟରେ କେବଳ ଉଲ୍ଲେଖ ରହିଛି ଯେ ସେ ମାତା ହୋଇଛି । କିନ୍ତୁ ସୀତାଙ୍କ ସନ୍ତାନ ପାଳନ ଉପରେ ସମସ୍ତ ଦଶମ ସର୍ଗ ଆଧାରିତ । ବସ୍ତୁତଃ, ସୀତାଙ୍କ ପକ୍ଷରେ ସାଢ଼େ ଏଗାର ବର୍ଷର ମୁଖ୍ୟ ଘଟଣା ଲବକୁଶକେନ୍ଦ୍ରିତ— ସନ୍ତାନ ଦୃଷ୍ଟିରୁ ଏବଂ "ପତିହିତ-ସାଧନା ତପସ୍ୟା" ଦୃଷ୍ଟିରୁ । ଦ୍ରୌପଦୀଙ୍କ ସମ୍ବନ୍ଧରେ ସନ୍ତାନ ପ୍ରସଙ୍ଗର ଉଲ୍ଲେଖ ନାହିଁ । କିନ୍ତୁ ପୂର୍ବେ ସୂଚିତ ହୋଇଛି ଯେ 'ପ୍ରଣୟବଲ୍ଲରୀ' ଓ 'ତପସ୍ୱିନୀ ଉଭୟ କାବ୍ୟରେ ଚରିତ୍ର-ବିକାଶ ପ୍ରଦର୍ଶନ କ୍ଷେତ୍ରରେ ବହୁସ୍ଥଳରେ ବାତ୍ସଲ୍ୟ ଏକ ଶକ୍ତିଶାଳୀ ସହାୟକ ରସରୂପେ ଗୃହୀତ ହେବାଦ୍ୱାରା ଏହି ନାରୀ-ଚରିତ୍ରମାନଙ୍କର ଶାଳୀନତା ଓ ଦାୟିତ୍ୱବୋଧ ମଧ୍ୟରେ ବ୍ୟକ୍ତିଗୌରବ ଦୀପ୍ତ ହୋଇଛି । କେବଳ ମାତ୍ର ଶୃଙ୍ଗାର ରସର ନାୟିକାଠାରେ ଏ ଧରଣର ମହତ୍ତ୍ୱପୂର୍ଣ୍ଣ ପ୍ରକାଶର ସମ୍ଭାବନା ଅଳ୍ପ ।

(ଛ) କେତୋଟି ମନୋରମ ବର୍ଣ୍ଣନା :

ବର୍ଣ୍ଣନା ମଧ୍ୟରେ ମିଳେ କବିର କଳ୍ପନା-ବିଳାସ, ଉପମା-ରୂପକ-ପ୍ରତୀକ ପ୍ରୟୋଗ ସ୍ୱଚ୍ଛତା, ଏବଂ ପ୍ରକାଶଭଙ୍ଗୀ ମଧ୍ୟରେ ଭାବର ଚମତ୍କାର ବିନ୍ୟାସ । କାବ୍ୟର ସ୍ତରେ ସ୍ତରେ ଜଡ଼ ଓ ଜୀବନ୍ତ ପ୍ରକୃତି, ଜୀବନର ବ୍ୟବହାର ଓ ଅନ୍ୟାନ୍ୟ ଚିତ୍ର, ଧ୍ୱନି ଓ ରସ ପରିବେଷଣ ତଥା ସ୍ୱୀୟ ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ ପ୍ରତିପାଦନ କରି ସ୍ରଷ୍ଟା କବି ହୁଅନ୍ତି ଅମର ଏବଂ ରସିକ ଗ୍ରାହକକୁ ଦିଅନ୍ତି ଚିରଂତନ ଆନନ୍ଦର ଉତ୍ସ । ମେହେରଙ୍କ ସମଗ୍ର ରଚନାରେ ଏହିପରି ହୃଦୟସ୍ପର୍ଶୀ ବର୍ଣ୍ଣନାର ଭୂରି ଭୂରି ଦୃଷ୍ଟାନ୍ତ ମଧ୍ୟରୁ ମାତ୍ର କେତୋଟି ଦେଖାଇ ଦେବା ଏଠାରେ ଉଦ୍ଦେଶ୍ୟ । 'ତପସ୍ୱିନୀ'ରେ ବିଳାପ ମୁଖରି ସୀତାଙ୍କ ବର୍ଣ୍ଣନାରେ କବିଙ୍କ ଅଳଂକାର ବିଳାସର ନମୁନା ଏହିପରି .—

(କ) "ଅବିରଳ ବହି ତାଙ୍କ ( ସୀତାଙ୍କ ) ନେତ୍ରୁଁ ନୀର ଧାର
ଅବିରତ ପଡୁଅଛି ବକ୍ଷର ଉପର ।
ଉଠି ଯେସନ୍ତେ ଜଳଧର ପଶ୍ଚିମ ଆଶାରେ ( ଦିଗରେ )
ଅସ୍ତାଚଳ ପ୍ଳାବିଦିଏ ଅଜସ୍ର ଆସାରେ ( ଅସରାରେ )
କିଷ୍ଣନ୍ଦ୍ର-କର-ଶୀକର ସରସୀ ଉରସେ
ପଡ଼ି ସିକ୍ତ କରେ କିବା ପ୍ରଦୋଷ-ସାରସେ ।"

ଏଠାରେ ସୀତାଙ୍କ ରୂପ ବର୍ଣ୍ଣନା ଲକ୍ଷ୍ୟ ନୁହେଁ, କିନ୍ତୁ ଉତ୍ପ୍ରେକ୍ଷା ମଧ୍ୟରେ 'ଅସ୍ତାଚଳ' ଏବଂ 'ପ୍ରଦୋଷ ସାରସ' ଉପମାନ ଦ୍ୱୟର ପ୍ରୟୋଗ ଯୋଗୁଁ ବକ୍ଷଶୋଭା ବ୍ୟଞ୍ଜିତ ହୋଇଛି । ( ବସ୍ତୁଧ୍ୱନି )

(ଖ) "ଗର୍ଭେ ଧରି ତାରା-ରତନ- ପୂର୍ଣ୍ଣ ଗଗନ ସିନ୍ଧୁ
ଅଗସ୍ତ୍ୟ ଗରିମା ଶୋଷନ୍ତି ପ୍ରଥ ଶିଶିର ବିନ୍ଦୁ ।"

ଅଗସ୍ତ୍ୟ ସମୁଦ୍ରର ସବୁ ଜଳତକ ପିଇ ଦେବାର ଗୌରବ ଲାଭ କରିଛନ୍ତି । ଶିଶିର ବିନ୍ଦୁ ଆକାଶରୂପୀ ସାଗରକୁ ଆପଣାର ଗର୍ଭସାତ୍ କଲାବେଳେ ତାରାରତ୍ନ ଗୁଡ଼ିକୁ ମଧ୍ୟ ପେଟରେ ରଖିଛି । ଅଗସ୍ତ୍ୟ କିନ୍ତୁ ରତ୍ନାକର ସମୁଦ୍ରର ରତ୍ନରାଜି ପାନ କରି ନ ଥିଲେ । ( ପରଂପରିତ ରୂପକ, ପ୍ରତୀପ ଓ ପ୍ରତୀୟମାନ ଉତ୍ପ୍ରେକ୍ଷାର ସଙ୍କର )

(ଗ) ଲଲିତ ଦିଶୁଛି ଲଲାଟେ ତାର ସିନ୍ଦୂର ବିନ୍ଦୁ
ମୁଖ-କମଳକୁ ହୋଇଛି କିବା ପୂର୍ଣ୍ଣିମା ଇନ୍ଦୁ ।
କର ଯୁଗଳରେ ଶୋଭୁଛି ସ୍ୱଚ୍ଛ ରତନ ଚୂଡ଼ି
ବିଷାଦ ସାଗର ସଲିଳେ ଝଟୁଅଛି ନ ବୁଡ଼ି ।
ଦରବିକଶିତ କମଳେ ବସିଛନ୍ତି ପଦ୍ମଯୋ
ଶତଦଳ ରୁଚି ରୁଚିର ଚେଲେ ସେ ଶୋଭା ପାଏ ।

ପଞ୍ଚଗୁଣ ସ୍ମରଣ କରି କରି ଉଚ୍ଚ କଣ୍ଠରେ ରୋଦନ କରୁଥିବା ସୀତାଙ୍କ ବିଷୟରେ ବାଲ୍ମୀକିଙ୍କ ତାପସକନ୍ୟାମାନେ ଏହିଭଳି ସମ୍ବାଦ ଦେଇଥିଲେ । (୧) ସୀତାଙ୍କ ମୁଖ ଶୋକ ଯୋଗୁଁ ମ୍ଳାନ ହୋଇଛି; ତା ମଧ୍ୟରେ ସୁନ୍ଦରତମ ଅଂଶଟି ହେଉଛି ସିନ୍ଦୂର ବିନ୍ଦୁ ଏବଂ ତାହା ପୂର୍ଣ୍ଣିମାର ନବୋଦିତ ଚନ୍ଦ୍ର ପରି ଉଜ୍ଜ୍ୱଳ ରକ୍ତବର୍ଣ୍ଣ ହୋଇଛି । (ସତେ ଅବା ଚନ୍ଦ୍ରୋଦୟ ଯୋଗୁଁ ମୁଖରୂପ ପଦ୍ମ ମଳିନ ହୋଇଛି । ) (୨) ହାତରେ ଅଛି ରତ୍ନଚୂଡ଼ି; ଦୁଃଖର ଉଚ୍ଛୁଳା ସାଗର ଭିତରକୁ ଏ ରତ୍ନ ଟାଣି ହୋଇ ନ ଯାଇ ତଥାପି ଦୁଃଖ ବନ୍ୟା ଭିତରେ କୂଳରେ ଝଟକୁଛି; (୩) ଫୁଟିଲା ପଦ୍ମ ମଧ୍ୟରେ ହଳଦିଆ କେଶରଟି ପରି ଏ କନକବର୍ଣ୍ଣା ନାରୀ ପିନ୍ଧିଛି ଏକ ଗୋଲାପୀ ରଙ୍ଗର ଶାଢ଼ୀ । ସିନ୍ଦୂର, ଚୂଡ଼ି, ରଙ୍ଗଶାଢ଼ୀ ସବୁ ମିଶାଇ ଓଡ଼ିଶା ଦେଶର ପରିପୂର୍ଣ୍ଣ ସଧବା ବଧୂଟିଏ; ତଥାପି କାହିଁକି ସ୍ୱାମୀ ଦୁଃଖରେ କାନ୍ଦୁଛି ବାପା, ଶୀଘ୍ର ଅସନ୍ତୁ ।

[ତିନୋଟି ପଦରେ ଏହାର ପ୍ରତିପାଦ୍ୟ ଏକ ସମ୍ପୂର୍ଣ୍ଣ ସୂଚନାମୂଳକ ଧ୍ୱନ୍ୟର୍ଥ— ଅଧବା (ବସ୍ତୁଧ୍ୱନି) । ପ୍ରଥମ ପଦରେ ପରମ୍ପରିତ ରୂପକ ସହିତ ଉତ୍ପ୍ରେକ୍ଷାର ସଙ୍କର । ଦ୍ୱିତୀୟ ପଦରେ ରୂପକ । ତୃତୀୟ ପଦରେ ପୂର୍ଣ୍ଣୋପମା ।]

(ଘ) ରାମ-ସାମ୍ରାଜ୍ୟେ ଯେ ସୀତା ଲୋକଲୋଚନେ ଦୂଷିତା
ହୋଇ ଚିର ନିର୍ବାସିତା, ସେ ତୋର ମତେ
ନିଜ ପତିବ୍ରତା-ଧର୍ମ- ବଳେ ସ୍ଥାବର ଜଙ୍ଗମ
ପବିତ୍ର କରଣେ କ୍ଷମ ହେବ ଜଗତେ;
ମାତା ବୁଝେ ସୁତା-ବେଦନା
ମାତା ନେଦେ ଦଗ୍ଧମୁଖୀ ଚନ୍ଦ୍ରବଦନା ।

ମାତୃସମା ତମସା ନଦୀ ପ୍ରତି ଉକ୍ତି । ସୀତା ଅନ୍ତରର ଅନନ୍ତ ଅଭିମାନ ପ୍ରକାଶ ପାଇଁ ସରଳ ପଦଟିଏ—ସତେ କେଡ଼େ ଦୁଃଖିନୀ ସେ—ଜୀବନର କି ବିଡମ୍ବନା ! [କରୁଣ ରସର ସଞ୍ଚାରୀ ଭାବ ଅଭିମାନ ଏଠାରେ ରସଧ୍ୱନି । ପ୍ରଭାବଶାଳୀ ଏହିଭଳି ରସଧ୍ୱନି ହୁଏ ପ୍ରସାଦ-ଗୁଣ-ଯୁକ୍ତ ନିରଳଂକୃତ ପଦବିନ୍ୟାସ ଦ୍ୱାରା ସରଳ ସତ୍ୟର ପ୍ରକାଶ ମଧ୍ୟରେ । ଶେଷାଂଶରେ ରସାନୁଗୁଣ ଅର୍ଥାନ୍ତର ନ୍ୟାସ ଅଳଂକାରଟିଏ— ତାହାଦ୍ୱାରା ଧ୍ୱନିତ ହେଉଛି ପ୍ରେୟ ଅଳଙ୍କାର (ଅଳଙ୍କାର-ଧ୍ୱନି—ଉଦ୍ଦେଶ୍ୟ ମାତାର ମନୋରଞ୍ଜନ) । ଗୋଟିଏ ପଦରେ ଅର୍ଥାନ୍ତରନ୍ୟାସ ଅଳଙ୍କାରଯୁକ୍ତ ଅଳଂକାର ଧ୍ୱନି ସମ୍ବଳିତ କରୁଣ ରସଧ୍ୱନି ।]

(ଙ) "ସୁରଙ୍ଗ ଚରଣ ଲେହନ ପାଇଁ
ପାରିଜାତ ଦେଲା ଜିଭ ଲମ୍ବାଇ
ମୋତି-ଜ୍ୟୋତି-ନଖ-ଚୁମ୍ବନ ଆଶେ
ଡାଳିମ୍ବ ରହିଲା ବକୃତ-ଆସ୍ୟେ
କରୁଣା ଗୁଣ ଅଶାୟୀ
ଚମ୍ପକଚମ୍ପା ହେଲା ହସିତ ବରଣ
ରାମରୂପ ଅନୁଯାୟୀ ।"

ସୀତା ବାଲ୍ମୀକି ଆଶ୍ରମର ଉପବନରେ ପଦସଞ୍ଚରଣ କଲାବେଳେ ସେଠାରେ ଥିଲେ ତିନୋଟି ପ୍ରାକୃତିକ ଦ୍ରବ୍ୟ—ପାରିଜାତ, ପାଚିଲା ଡାଳିମ୍ବ ଫଳ ଓ ଚମ୍ପକଚମ୍ପା ଫୁଲ । ବାଡ଼ ପାଖରେ ଥିବା ପାରିଜାତ (ମନ୍ଦାର) ତାର ଲମ୍ବା କେଶର ଲମ୍ବାଇ ରାସ୍ତା ଉପରେ ପଡ଼ିଛି; ଏକ ଅନୁଗତ ଭୃତ୍ୟ, ଲୋଭ ତାର ସୀତାଙ୍କ ପାଦତଳର ରକ୍ତବର୍ଣ୍ଣକୁ (ଅଳତାକୁ) ଚାଟି ନେଇ ନିଜେ ବୋଲି ହୋଇ

ପଲ୍ଲବ । ସୀତାଙ୍କ ନଖରେ ମୁକ୍ତାର ଶୋଭା; କେଉଁ କଉଚି ଡାଳିମ୍ବ ସେ ନଖ ତା' ଭିତର ମଞ୍ଜି ପାଖକୁ ଆସିଲେ ଚୁମ୍ବନ କରି ଦନ୍ତେ ହେବ ତାହାଭଳି । ତେଣୁ ଫାଟିଯାଇ ମୂହଁ ଦେଖେଇ ଦେଉଛି (ଡାଳିମ୍ବ ପାଚିଗଲେ ଫାଟିଯାଏ, ଭିତରର ମଞ୍ଜି ଦିଶେ) । ଶେଷରେ ଚମ୍ପକ ଫୁଲ ଶାଗୁଆ ରଙ୍ଗ ଧରିଛି ରାମଙ୍କ ଦେହର ବର୍ଣ୍ଣ ଅନୁକରଣରେ;—ଆଶା ତାର, ସୀତାଙ୍କ କୃପାଲାଭ । ପାରିଜାତ ଓ ଡାଳିମ୍ବ—ପ୍ରତ୍ୟେକ ବର୍ଣ୍ଣନାରେ ପ୍ରସିଦ୍ଧ ଉପମାନର ଗୌଣତା ଉକ୍ତ ହେବାରୁ ବ୍ୟତିରେକ ଏବଂ ଅନୁଗତ କୃପା ପ୍ରାର୍ଥୀର ବ୍ୟବହାର ସମାରୋପିତ ହେବାରୁ ସମାସୋକ୍ତି—ଏ ଉଭୟର ସଙ୍କର । ଚମ୍ପକ ବର୍ଣ୍ଣନାରେ ଅପ୍ରସ୍ତୁତପ୍ରଶଂସା ।

(ଚ) "ରାମ୍ଭ ଦର୍ଶନ ଆଶା ରଖି ଅଟଳ, ଅଗ୍ରକୁ ଅଗ୍ର ଆସି ମେଘ ପଟଳ,
ଲେଉଟନ୍ତି ଭୂମି ଭୂମି ଦର୍ଶନ ଦଶା, କାହିଁ ଅଛନ୍ତି ବୋଲି ସୀତା ସୁଦଶା ।
ପୁଚ୍ଛନ୍ତି ମୋତେ ମନ୍ଦ୍ର ଗମ୍ଭୀର ସ୍ୱରେ ମାନନ୍ତି ନାହିଁ କେବେ 'ନାହିଁ' ଉତ୍ତରେ ।
ଖୋଜନ୍ତି ପୁଣି ଶମ୍ପା-ଆଲୋକ ଧରି, ନିଶ୍ଚୟ ଅଛୁ ବୋଲି ସୀତା-ସୁଦଶା ।"

ସୀତାଙ୍କ ସ୍ମୃତିକୁ ଆସିଛି ଅତୀତର ଚିତ୍ରକୂଟ ଜୀବନ, ସେଠାରେ ମେଘ-କାଳର ଦୃଶ୍ୟ । ସତେ ଅବା ଚିତ୍ରକୂଟ ଆସି ପହଞ୍ଚିଛି ଏକ ଅତିଥି, ଦର୍ଶନ-ପ୍ରାର୍ଥୀ ଭାବେ ଏବଂ ମେଘର ବ୍ୟବହାରରେ ଜୀବନ୍ତ ବ୍ୟକ୍ତିର ବ୍ୟବହାର ଦର୍ଶାଇ କହିଗଲେଛି ଲେଉଟନ୍ତି, ପୁଚ୍ଛନ୍ତି, ଖୋଜନ୍ତି । ଭାବ ଅପ୍ରସ୍ତୁତ ସ୍ପଷ୍ଟ । ଶମ୍ପା ଆଲୋକ, ବଣୁଆର ବତି (ରୂପକ : Torch)—ଅପ୍ରସ୍ତୁତପ୍ରଶଂସା ଅନୁପ୍ରାଣିତ ସମାସୋକ୍ତି ଅଳଂକାର—ପ୍ରତ୍ୟେକ ବର୍ଣ୍ଣନାରେ ଉତ୍ପ୍ରେକ୍ଷାଳଂକାର ଧ୍ୱନି ।

(ଛ) ଅନୁବାଦ କୁଶଳତା :

ଶାକୁନ୍ତଳମ୍—"ଭୋ ଭୋ ସନ୍ନିହିତବନ ଦେବତା ସ୍ତପୋବନତରବଃ !
ପାତୁଂ ନ ପ୍ରଥମଂ ବ୍ୟବସ୍ୟତି ଜଳଂ ଯୁଷ୍ମାସ୍ୱପିକ୍ତେଷୁ ଯା
ନାଦତ୍ତେ ପ୍ରିୟମଣ୍ଡନାଽପି ଭବତାଂ ସ୍ନେହେନ ଯା ପଲ୍ଲବମ୍ ।
ଆଦୌ ବଃ କୁସୁମ-ପ୍ରବୃତ୍ତି-ସମୟେ ଯସ୍ୟା ଭବତ୍ୟୁତ୍ସବଃ
ସେୟଂ ଯାତି ଶକୁନ୍ତଳା ପତିଗୃହଂ ସର୍ବୈରନୁଜ୍ଞାୟତାମ୍ ।"

ପ୍ରଣୟ ବଲ୍ଲରୀ : "କାନନକୁ ଚାହିଁ ବୋଇଲେ ମୁନୀନ୍ଦ୍ର
"ଆହେ ତରୁଲତା ମାନେ
ତୁମ୍ଭ ଆଜନମ ସଖୀ ଯାଉଅଛି
ଆଜ ପତି-ସନ୍ନିଧାନେ ।

ଜଳପାନ କରୁ ନଥିଲ ଯେ ଆଗେ
ତୁମ୍ଭଙ୍କୁ ନ ଦେଇ ଜଳ,
ହେଉଥିଲ ତୁମ୍ଭ ଅଙ୍ଗେ ନବ ପୁଷ୍ପ
ଦେଖିଲେ ମୃଦେ ବହୁଳ;
ତହିଁ ପାଇଁ ସଖୀ- ବୃନ୍ଦ ଯେବେ ଯେତେ
କରୁଥିଲ ମହୋତ୍ସବ,
ଯେତେ ଯତନରେ ରଖୁଥିଲ ତୁମ୍ଭ
ନୈସର୍ଗିକ ସୌଷ୍ଠବ;
ଭୂଷଣ ରଙ୍କୁଣୀ ହୋଇ ଯେ ତୁମ୍ଭର
ଅଙ୍ଗ ଭଙ୍ଗ ହେବ ଜାଣି
କେବେହେଁ ତୁମ୍ଭର ପଲ୍ଲବ-ଛେଦନେ
ବଢ଼ାଇ ନଥାଏ ପାଣି;
ତୁମ୍ଭେମାନେ ଏବେ ପ୍ରସନ୍ନ ସ୍ୱବରେ
କର ଅନୁମତ ଦାନ,
ମଧୁମସ୍ତ ଶୁଭ ମସ୍ତ ହେଉ ସେହ
ଶକୁନ୍ତଳାର ପ୍ରସ୍ଥାନ ।"

ଏ କାବ୍ୟର ଅନୁବାଦ ଯେପରି ବିଶ୍ୱସ୍ତ ସେହିପରି ସରଳ ସୁନ୍ଦର । ମନେହୁଏ ସତେ ଅବା ଏହା ଏକ ମୌଳିକ ରଚନା । ଶକୁନ୍ତଳା ନାଟକରେ କଣ୍ୱଙ୍କର ଏହି ବାଣୀରେ ଅଲଙ୍କାରନଥିଲା । କବି ତାହାର ମର୍ଯ୍ୟାଦା କରିଛନ୍ତି । କୁରୁଙ୍ଗଟା ସ୍ୱଭାବିକ ଯେତେବେଳେ ପ୍ରକାଶ ଦେଇ ପାରିଛନ୍ତି ତାହାର ଗୁଣ । ଏଠାରେ ରସ ବାତ୍ସଲ୍ୟ-କରୁଣ ।

(ଜ) ଅନୁବାଦରେ ଅଧିକ ସଂଯୋଜନର ଗୁରୁତା :

ଶାକୁନ୍ତଳମ୍ : "ସରସିଜମନୁବିଦ୍ଧଂ ଶୈବଳେନାପି ରମ୍ୟଂ
ମଳିନମପି ହିମାଂଶୋର୍ଲକ୍ଷ୍ମ ଲକ୍ଷ୍ମୀଂ ତନୋତି ।
ଇୟମଧିକ ମନୋଜ୍ଞା ବଲ୍‌କଲେନାପି ତନ୍ୱୀ
କିମିବ ହି ମଧୁରାଣାଂ ମଣ୍ଡନଂ ନାକୃତୀନାମ୍ ।"

ପ୍ରଣୟ ବଲ୍ଲରୀ : "ମୃଦୁ ମନୋହର କଳେବରେ ଦେଖି
ବଲ୍‌କଳର ପରିଚ୍ଛଦ,
ମନେକଲେ ଆହା ରାଜଲକ୍ଷ୍ମୀ-ତନୁ (୧)
ସମର-ଚନ୍ଦ୍ରା ଆସ୍ପଦ ।

ବହୁ ଭୂତ ହୋଇ ପଙ୍କରୁ ତଥାପି
ଲଲନା-ଲାବଣ୍ୟ-ପ୍ରଭା,
କିବା ହରିକଣ୍ଠା- ଚନ୍ଦ୍ରିକା, (୨) ଶୈବାଳ-
ବେଷ୍ଟିତ ପଦ୍ମିନୀ ଶୋଭା ।
କଳଙ୍କ ହିଁ ଥାଇ କଳାକର-କୋଳେ
କରଇ ନେତ୍ର-ରଞ୍ଜନ
ସ୍ୱଭାବ ସୁନ୍ଦର ଅଙ୍ଗକୁ ଜଗତେ
ନ ହୁଏ କିସ ମଣ୍ଡନ ।"

ଏ ଅନୁବାଦରେ ରେଖାଙ୍କିତ ଦୁଇଟି ସ୍ଥଳରେ ଦୁଇଟି ଉତ୍ପ୍ରେକ୍ଷା କବି ଅଧିକ ସଂଯୋଜନ କରିଛନ୍ତି । ମୂଳ ଶ୍ଳୋକରେ ଥିବା ପ୍ରଥମ ତିନିପାଦରେ ଦୁଇଟି ଦୃଷ୍ଟାନ୍ତକୁ ନେଇ ପ୍ରତିବସ୍ତୂପମା ଅଳଂକାର ଏବଂ ଶେଷ ପାଦରେ ଏକ ଅର୍ଥାନ୍ତର ନ୍ୟାସ ଅଳଙ୍କାରର ସୃଷ୍ଟି । ଅନୁବାଦରେ ଦୁଇଟି ଅଧିକ ଉତ୍ପ୍ରେକ୍ଷା, ଗୋଟିଏ ପ୍ରତିବସ୍ତୁପମା ଏବଂ ଅର୍ଥାନ୍ତର ନ୍ୟାସର ସଂସୃଷ୍ଟି ରହିଛି । ଅନୂଦିତ ପଦର ଗୌରବ ଅବ୍ୟାହତ ରଖିବା ସଙ୍ଗେ ସଙ୍ଗେ ଅଧିକ ଦୁଇଟିର ସଂଯୋଗ ଅତ୍ୟନ୍ତ ମନୋରମ ଭାବେ ଅଳଂକୃତ ହୋଇଯାଇଛି ।

(ଙ) ସ୍ୱଭାବୋକ୍ତି :—"ବାମ କକ୍ଷେ ଜଳ- କୁମ୍ଭ ଧରି ଅଙ୍ଗ
ଲତିକା ଦକ୍ଷିଣେ ଟାଳି
ବାମେତର ଭୁଜ ହଲାଇ ହଲାଇ
ଆସନ୍ତି କି ରଙ୍ଗେ ଚାଲି ।"

ନଦୀରୁ କାଖରେ ଗରା ବୋହି ପାଣି ଆଣୁଥିବା ସୁନ୍ଦରୀ ଯୁବତୀ ଯିଏ ଦେଖିଥାନ୍ତି ସେ ଛବିକୁ ଏହି ଚାରି ଧାଡ଼ି ମିଳାଇ ଦେଖିଲେ ବର୍ଣ୍ଣନାର ସ୍ୱାଭାବିକତା ଓ ଶକ୍ତି ହୃଦୟଙ୍ଗମ କରିହେବ ।

(ଚ) ଉଷା ପୂର୍ବରୁ ଚନ୍ଦ୍ରାସ୍ତ ବର୍ଣ୍ଣନା (କୀଚକ ବଧ) :

"ବହୁ ଛଳମୟରେ ସୁଧାକର ଚନ୍ଦ୍ର ପଡ଼ିଗଲେ କାଳବଳେ
ବାରୁଣୀ ଗ୍ରାସରେ କପିତ୍ୱ ପରଶେ ବାରୁଣୀ ମଦ୍ୟ କବଳେ ।
ଛିଣ୍ଡାଇ କୁସୁମ- ହାର ବିଶ୍ୱବଶ ବଲ୍ଲଭ ବିରହ-ଦୁଃଖେ
କେତେ ବିଳପିଲ କୋମଳ ବାକ୍ୟରେ କଳକଣ୍ଠ ପକ୍ଷୀର ମୁଖେ।
ଶେଷେ ଭାବ୍ୟମଣି- କୁନ୍ତଳା ପଶିଲା ଅରୁଣ ଚିତା-ଅନଳେ
ଧୂମ ଶ୍ରେଣୀ ଯାର ବାଷ୍ପ ବ୍ୟପଦେଶେ ଉଠିଲା ଜଳଧି ଜଳେ ।

ଦ୍ୱିଜରାଜ ହତେ ଦଳ ଦଳ ହୋଇ କାନ୍ଦିଲେ ଦ୍ୱିଜ ସକଳ
ଦ୍ୱିଜ ହୋଇ ଦ୍ୱିଜ- ଗଣ ଅପସ୍ନାନ କରିଦେଲେ ପ୍ରେତଜଳ ।"

ବର୍ଣ୍ଣନାରେ ଚନ୍ଦ୍ରର ମୃତ୍ୟୁ ଏବଂ ତାହାଯୋଗୁଁ ସମ୍ପ୍ରଦାୟ ପ୍ରତ୍ୟକ୍ଷ ପ୍ରକୃତିର ଶୋକ ଓ ଶ୍ରାଦ୍ଧ ପାଳନର ଚିତ୍ର ଅଙ୍କିତ ହୋଇଛି । ପ୍ରକୃତିରେ ମାନବ-ଜୀବନର ସମାନ୍ତରାଳ ଧାରା ପ୍ରଦର୍ଶନ ଏହାର ବୈଶିଷ୍ଟ୍ୟ । ତାହା ସଙ୍ଗେ ସଙ୍ଗେ ଏହି ପ୍ରସଙ୍ଗରେ କୀଚକ ତାହାର ମୃତ୍ୟୁର ଆମନ୍ତ୍ରଣ ପାଇଁ ଦୂତୀ ପ୍ରେରଣ କରିବା ପାଇଁ ଉଦ୍‌ବିଗ୍ନ ରହିଥିବାରୁ ଏ ବର୍ଣ୍ଣନା ମଧ୍ୟରେ ଅମଙ୍ଗଳ ସୂଚନା ମଧ୍ୟ କାବ୍ୟର ଲକ୍ଷ୍ୟ ପାଇଁ ଅନୁକୂଳ ।

ଅର୍ଥ : (ବାରଣ,) ହାତୀ ଜଇଥ ଖାଇଲା ଭଳି ଗୋଲାକାର ଶୁକ୍ଳ ରୂପ ଚନ୍ଦ୍ର (ସୁଧାକର,) ଅମୃତର ପିଣ୍ଡ ହୋଇଥିବାରୁ (ବାରୁଣୀ), ପଶ୍ଚିମ ଦିଗସ୍ଥ (ବାରୁଣୀ,) ବାରୁଣୀ ନାମ୍ନୀ ଦିଗ୍‌ହସ୍ତୀ ତାଙ୍କୁ ଗିଳି ପକାଇଲା । ପତି ମୃତ୍ୟୁ ଦୁଃଖରେ (ବିଭାବରୀ,) ରାତ୍ରି ସତେ ଯେପରି ତା ଗଳାର ତାରାଧର ଫୁଲମାଳ ଛିଣ୍ଡାଇ ସବୁଆଡ଼େ ବିଞ୍ଚିଦେଲା । କଜଳପାତିର କଙ୍କଣ ରବ ତାର ବିକଳ କାନ୍ଦଣା ହେଲା । ଶେଷରେ ପୂର୍ବଦିଗରେ ସିନ୍ଦୂର ଫାଟି ଲାଲ ଦିଶିବାରୁ ସତେ ଅବା ଚନ୍ଦ୍ରଙ୍କ ଚିତାଗ୍ନି ଜଳିଲା ଏବଂ ତହିଁରେ ସେହି ବିଧବା ରଜନୀ ବଧୂ (କାବ୍ୟମଣି) ପ୍ରଭାତୀ ତାରା ରୂପକ ମଣିରେ ଆପଣା କେଶମଣ୍ଡନ କରି ସେହି ଚିତାରେ ପଶିଗଲା । (ରାତିର ଅନ୍ଧାର ସହିତ ପ୍ରଭାତୀ ତାରା ମଧ୍ୟ ସିନ୍ଦୂର ବେଳର ଆଲୋକରେ ଲୁଚିଗଲା ।) ଏହାର ପ୍ରମାଣ ସ୍ୱରୂପ କୁହାଯାଇପାରେ ଯେ ବାସ୍ପଛଳରେ ଧୂଆଁ ଉଠି ସମୁଦ୍ରକୁ ଗ୍ରାସି ପକାଇଲା । (ଦ୍ୱିଜରାଜ) ଚନ୍ଦ୍ରର ମୃତ୍ୟୁରେ (ଦ୍ୱିଜ) ପକ୍ଷୀମାନେ ନିଜ ଜାତିର ରଜା ମରିଗଲେ ବୋଲି ଦଳଦଳ ହୋଇ କାନ୍ଦିଲେ । (ଦ୍ୱିଜ,) ଦାନ୍ତ ଓ ମୁହଁ ଧୋଇ (ଦ୍ୱିଜଗଣ,) ବ୍ରାହ୍ମଣମାନେ ତାଙ୍କ ଅଶୌଚ ଦୂର କରିବା ଲାଗି (ଅପସ୍ନାନ,) ପ୍ରେତସ୍ନାନ କରି (ପ୍ରେତଜଳ,) ତର୍ପଣ କଲେ । ସୁଣରୋଟି ପଦରେ ଚନ୍ଦ୍ରାସ୍ତର ଏ ବର୍ଣ୍ଣନା ଉପରର (ଗ) ନମ୍ବରରେ ଥିବା ଚିତ୍ର ପରି ଏକ ସମ୍ପୂର୍ଣ୍ଣ ଛବି । ଏଥିରେ ଶ୍ଳେଷ, ଅତିଶୟୋକ୍ତି, ଉପମା, ସମାସୋକ୍ତି, ରୂପକ, ଅପହ୍ନୁତିର ଏକ ବିଚିତ୍ର ସଂକର ଅଳଙ୍କାର ପରିକଳ୍ପିତ ହୋଇଛି । କହିବା ବାହୁଲ୍ୟ ଏଭଳି କଳ୍ପନା ଓ ବର୍ଣ୍ଣନା ଗୀତିକାବ୍ୟର ଧାରାକୁ ପ୍ରମୂର୍ତ୍ତ କରିଛି ।

ଏ ଧରଣର ଅନ୍ୟ ବହୁ ବର୍ଣ୍ଣନା ରହିଛି । ବାହୁଲ୍ୟ ଭୟରେ ଏଠାରେ ମାତ୍ର ଦୃଷ୍ଟାନ୍ତ ପ୍ରଦର୍ଶିତ । ଗଙ୍ଗାଧର କାବ୍ୟର ଗମ୍ଭୀରତର ଅଧ୍ୟୟନ ଫଳରେ ଏ ସବୁର ଅବବୋଧ ସମ୍ଭବ ହେବ ।

୭ । ଉପସଂହାର :

ଗଙ୍ଗାଧରଙ୍କ ଜୀବନୀ ଓ ସାହିତ୍ୟର ଏ ସଂକ୍ଷିପ୍ତ ପରିଚୟାତ୍ମକ ଗ୍ରନ୍ଥରେ ସେହି ସ୍ରଷ୍ଟାର ତଥା ତାଙ୍କ ସୃଷ୍ଟିର ସକଳ ବୈଶିଷ୍ଟ୍ୟ ବିଷୟର ପରିପୂର୍ଣ୍ଣ ବିଚାର ଆଲୋଚନା ସମ୍ଭବ ନୁହେଁ । ଏହି କେତୋଟି ସୂଚନା ଓ ନିଦର୍ଶନର ଅନୁସରଣରେ ଆଗ୍ରହୀ ପାଠକ ଏ ଦିଗରେ ପ୍ରରୋଚିତ ହେବେ, ଏପରି ଆଶା ରହିଛି ।

ଶେଷରେ ଗଙ୍ଗାଧରଙ୍କ କାବ୍ୟ-ଶୈଳୀରେ ଆମର ଭାରତୀୟ ତଥା ଉତ୍କଳୀୟ ପରମ୍ପରାର ଏକ ମନୋଜ୍ଞ ଅନୁବର୍ତ୍ତନ ରହିଛି । ବ୍ୟାସ-ବାଲ୍ମୀକି-ସେବିତ ଆଦର୍ଶ ଓ ମୂଲ୍ୟବୋଧ ଏ ଦେଶରେ ମାନବର ଜୀବନ ଯନ୍ତ୍ରଣା ଭିତ୍ତିରେ କାଳଜୟୀ ସାହିତ୍ୟ ପାଇଁ ଉପାଦାନ ଯୋଗାଇଛି । କାଳିଦାସ ପ୍ରମୁଖ ମହାକବି ତହିଁରେ ରସାଭିମୁଖ୍ୟର ସଂଯୋଜନା କରି ଅମର ଜୀବନ-କାବ୍ୟ ସୃଷ୍ଟି କରିଛନ୍ତି । ଏହି ପରମ୍ପରାର ଅନୁବର୍ତ୍ତନ କ୍ରମେ ଓଡ଼ିଆ ସାହିତ୍ୟରେ ଯେଉଁ ପ୍ରାଚୀନ ସାହିତ୍ୟ ସୃଷ୍ଟି ହୋଇଥିଲା ତାହାର ଏକ ମୁଖ୍ୟ ଅପର ଉପାଦାନ ଥିଲା ଓଡ଼ିଆ ଗ୍ରନ୍ଥ ରାଗରାଗିଣୀ ଓ ସଙ୍ଗୀତ । ରାଧାନାଥ ରୀତିକାବ୍ୟର ଏହି ସଙ୍ଗୀତକୁ ପଦଯୋଜନାରେ କଣ୍ଟିତ ଗ୍ରହଣ କରି ଛନ୍ଦ କ୍ଷେତ୍ରରେ ଏକ ପ୍ରକାର ବିଦାୟ ନେଇଥିଲେ । ସେହିପରି ଶବ୍ଦକାଠିନ୍ୟ ଓ ଅଳଙ୍କାର ବାହୁଲ୍ୟ ଉଭୟ ଦିଗରେ ସେ ଆଣିଦେଲେ ସାରଲ୍ୟ ଯାହା ଯୋଗୁଁ ଆଖ୍ୟାନ ବସ୍ତୁର ଧାରା ସ୍ପଷ୍ଟ ଓ ମୁଖ୍ୟ ହେଲା । ଗଙ୍ଗାଧରଙ୍କ ରଚନାରେ ଆମେ ଏ ସବୁର ଏକ ମନୋହର ସମାହାର ପାଉଁ । ଭାବଧାରା ଦୃଷ୍ଟିରୁ ପାରମ୍ପରିକ ଭାରତୀୟ ଜୀବନ ଯନ୍ତ୍ରଣାର କଥା, କାଳିଦାସୀୟ ଶୈଳୀର ରସବିନ୍ୟାସ, ଭଞ୍ଜ ଶୈଳୀର ଛନ୍ଦ ଓ ସଙ୍ଗୀତ ସହିତ ସେ ପ୍ରତ୍ୟକ୍ଷ ଭାବେ ଗ୍ରହଣ କଲେ ରାଧାନାଥ ଶୈଳୀ । ଏହା ସହିତ ଗଙ୍ଗାଧରଙ୍କ ନୂତନ ସଂଯୋଗ ରହିଲା ତାଙ୍କ ସମସାମୟିକ କାଳର ଯୁଗ ଚେତନା ଅନ୍ତରାଳରେ ସେ କାଳର ସମସ୍ୟା ଓ ସମାଧାନ ଯାହାର ଅନ୍ୟ ସମାଖ୍ୟା ଯୁଗଯନ୍ତ୍ରଣା । ଏ ସବୁର ଧାରା ଏକତ୍ର ସମ୍ମିଳିତ ହୋଇ ସୃଷ୍ଟି କରିଛି ଗଙ୍ଗାଧରଙ୍କ ଶୈଳୀକୁ । ଫଳତଃ, ରାଧାନାଥ ଯୁଗର ଲେଖକ ହେଲେ ମଧ୍ୟ ଏବଂ ଗୁରୁ ରାଧାନାଥଙ୍କ ଠାରୁ ଶିକ୍ଷା ନେଇ ଆଧୁନିକ ମାର୍ଗରେ ଗତିକଲେ ମଧ୍ୟ ଗଙ୍ଗାଧରଙ୍କ ଶୈଳୀ ଆପଣାର ପ୍ରାଣ ଏବଂ ପ୍ରକାଶଭଙ୍ଗୀ ଉଭୟ କ୍ଷେତ୍ରରେ ସ୍ୱତନ୍ତ୍ର ହୋଇଯାଇଛି ।

ଏହା ରାଧାନାଥ ଶୈଳୀଠାରୁ ଭିନ୍ନ ଏକ ଅଭିନବ ଶୈଳୀ— ଗଙ୍ଗାଧରୀ ଶୈଳୀ ।

ଏ ଶୈଳୀ ସହିତ ଅପର ଉଲ୍ଲେଖଯୋଗ୍ୟ ବିଷୟ କବିଙ୍କ ବ୍ୟକ୍ତିତ୍ୱ । ଗଙ୍ଗାଧରଙ୍କ କାବ୍ୟକବିତାର ଐତିହାସିକ ଆନୁପୂର୍ବିକତା ବିଚାର କଲାବେଳେ ତାଙ୍କ ବ୍ୟକ୍ତିତ୍ୱ ଏବଂ ଶୈଳୀର ଏକ ବିବର୍ତ୍ତନ ଦୃଷ୍ଟିପଥକୁ ଆସେ । ଫଳତଃ 'ଇନ୍ଦୁମତୀ' ଏବଂ 'ତପସ୍ୱିନୀ'ର ଶୈଳୀ ପରସ୍ପରଠାରୁ ଏତେ ଭିନ୍ନ । ଏ ପାର୍ଥକ୍ୟର ଏହି ବିଭବ ଯଥାର୍ଥ ଭାବେ ଲକ୍ଷ୍ୟ କରି କବି ମାୟାଧର ମାନସିଂହ ମନ୍ତବ୍ୟ ଦେଇଛନ୍ତି :

''ମେଘଦୂତ' ଲେଖକ ରାଧାନାଥ ଓ 'ପାର୍ବତୀ' ଲେଖକ ରାଧାନାଥ ଏକ, ଯଦିଓ ଉଭୟ ଲେଖା ମଧ୍ୟରେ ବହୁବର୍ଷର ବ୍ୟବଧାନ । ରାଧାନାଥ ଆରମ୍ଭରୁ ସମ୍ପୂର୍ଣ୍ଣ । କିନ୍ତୁ 'କୀଚକ ବଧ'ର ଗଙ୍ଗାଧର, 'ତପସ୍ୱିନୀ'ର ଗଙ୍ଗାଧର ସମାନ ନୁହନ୍ତି । ଏ ଦୁଇର ତୁଳନା କଲେ ଯେ କେହି ସ୍ପଷ୍ଟ ଦେଖିପାରିବ, ସମୟ ସଙ୍ଗେ କବିଙ୍କର କବିତ୍ୱର କପରି ମନୋହର ଉଦାର ଅଭିବୃଦ୍ଧି ଓ ସମ୍ପ୍ରସାରଣ ଘଟିଛି ।''

